ମୁଇଁ ହିଁ ସୁରଜ୍ ହଇକରି ତାପ୍ ଦଉଛେଁ, ବରଷାକେ ଘିଚୁଛେଁ ଆର୍ ପାଏନ୍ ବରଷଉଛେଁ। ଆହୋ ଅରଜୁନ୍! ମୁଇଁ ହିଁ ଅମ୍ରୁତ ଆର୍ ମରନ୍, ସତ୍-ଅସତ୍ ଭି ମୁଇଁ ଆଏଁ।୧୯।

ତିନ୍‌ହି ବେଦର୍ ନିସ୍‌ପାପ୍ ପଣ୍ଡିତ୍‌ମାନେ ଯଗ୍ୟଁର୍ ସୋମ୍‌ରସ୍ ପିଇକରି ରକମ୍ ରକମର୍ ଯଗ୍ୟଁ ପୁଜାଧଜା କରି କରି ସରଗ୍ କାମନା କରସନ୍। ସେମାନେ ନିଜର୍ ପୁଇନ୍ ଫଲନୁ ସରଗ୍‌କେ ଯାଇକରି ଦିନାକେତେ ଦିବ୍ୟ ଦେବ୍ ଭୋଗ୍ ପାଏସନ୍।୨୦।

ସରଗେ ସେମାନ୍‌କର୍ ପୁଇନ୍ ଅଁଟିଗଲେ ଫେର୍ ଜନମ୍ ହେସନ୍ ଇ ମରତିଅ ନ । ଫଲର୍ ଆଶା ରଖିକରି ତିନ୍‌ହି ବେଦର୍ କରମ୍ କଲେ ଭିଲ୍ ପାର୍‌କେ ପାର୍ ତାକର୍ ଜନମ୍ ମରନ୍ ଲାଗିଥିସି।୨୧।

ଯେନ୍ ଭକତ୍‌ମାନେ ମତେ ହରୁ ହରଦମ୍ ନିସ୍‌କାମ ଭାବେ ଭଜନ୍ କରସନ୍ ସେମାନ୍‌କର୍ ଜିମା ଖୁଦ୍ ମୁଇଁ ବୁହିସିଁ।୨୨।

ଆହୋ ଅରଜୁନ୍! ଯେନ୍ ସକାମି ଭକତ୍‌ମାନେ ଶ୍ରଦ୍ଧାଥି ଦୁସ୍‌ରା ଦେ ଦେବ୍‌ତାର୍ ପୁଜା କର୍‌ସନ୍, ସେମାନେ ମତେ ହିଁ ପୁଜା କରିଥିସନ୍। ହେଲେ ତାକର୍ ସେ ପୁଜାଧଜାଟା ଅବିଧିର୍ ଆଏ ।୨୩।

କେନ୍ତା ବଏଲେ ସବୁଜାକର୍ ଯଗ୍ୟଁର୍ ଭୁଗତା ଆର୍ ସ୍ୱାମି ମୁଇଁ ହିଁ ଆଏଁ, ହେଲେ ସେମାନେ ମୋର୍ ତତ୍ତ୍ୱକେ ନାଇଁ ଜାନନ୍ ବଲି ଦଲ୍‌ଦଲିଥି ଲୁଟ୍‌ପୁଟାସନ, ତାର୍‌ମାନେ ସେମାନେ ଇ ପୁରଥିନ ଫେର୍ ଘାଏ ଜନମ୍ ହେସନ୍ ।୨୪।

ଦେ ଦେବ୍‌ତାକୁଁ ପୁଜା କଲା ଲୁକେ ଦେବ୍‌ତାକେ ପାଏସନ୍, ପିତୁର ପିତାକୁଁ ପୁଜା କଲା ଲୁକେ ପିତୁରପିତାକେ ପାଏସନ୍, ଭୁତ୍‌ପ୍ରେତ୍ କେ ପୁଜା କଲା ଲୁକେ ଭୁତ୍‌ପ୍ରେତ୍‌କେ ପାଏସନ୍ ଆଉର୍ ମତେ ପୁଜା କଲା ଭକତ୍‌ମାନେ ମତେ ହିଁ ପାଏସନ୍ ।୨୫ ।

ଯେନ୍‌ସି ବି ଭକତ୍ ମତେ ନିର୍‌ମଲ ଭକ୍‌ତିଥି ପତର୍, ଫୁଲ୍, ଫଲ କି ପାଏନ୍ ଚଢ଼ାଲେ / ଅର୍‌ପନ୍ କଲେ ସେ ସବୁ ମୁଇଁ ଉସତ୍ ହଇକରି ଛିନ୍‌ସିଁ ।୨୬ ।

ହୋ ଅର୍‌ଜୁନ୍ ! ତମେ ଉଠ୍‌ନୁ ବସ୍‌ନୁ ଯାହା ଯାହା କରୁଛ, ଖିଆପିଆ, ହୋମ୍, ଦାନ୍, ତପ୍ କରମ୍ ସବୁ ମତେ ସଁପି ଦିଅ ।୨୭ ।

ଏନ୍ତା ଭାବେ ସବୁ କରମ୍ ମୋର୍‌ଠାନେ ଅର୍‌ପନ୍ କଲେ, ସନ୍ୟାସ ଯୋଗ୍‌ଥି ବିନ୍ ଫଲର୍ ଆଶେଁ କରମ୍ କଲେ, ତମେ ଶୁଭ ଅଶୁଭ କରମ୍ ଫାସୁ ମୁକ୍‌ଲିକରି ମତେ ପାଏବ ।୨୮ ।

ମୁଇଁ ସବୁ ପ୍ରାଣୀର୍‌ଠାନେ ସମାନ ଭାବେ ଅଛେଁ । ମୋର୍ ମଏତର୍ ଭଗାରି କିହେ ନୁହେଁସେ । ହେଲେ ଯେନ୍ ଭକତ୍‌ମାନେ ମତେ ପେରେମ୍‌ଥି ଭଜସନ୍ ସେମାନେ ମୋର୍ ଭିତ୍‌ରେ ଥିସନ୍ ଆରୁ ମୁଇଁ ସେମାନକର୍ ଭିତ୍‌ରେ ପରତଏଖ୍ ପ୍ରକଟ ହଇଥିସିଁ ।୨୯ ।

ଅଏସୋ ନିଠାର୍ ପାପି ଘଲେ ଜଦିର୍‌ବି ଭକ୍‌ତି ଭାବେ ମତେ ଭଜ୍‌ବେ ଜାନି ଥ ସେ ଭି ସାଧୁ ଆନ୍ । କାରନ୍ ସେ ଭଲ୍‌ଭାବେ ନିଝାଟ୍ କରିନେଇଥିସନ୍ ଯେ ମହାପୁରୁର୍ ଭଜନ୍ ସମାନେ ଦୁସ୍‌ରା କିଛୁ ନାଇଁନ ।୩୦ ।

ସେମାନେ ଚାଣ୍‌ହେଁ ଧରମ୍ ଆତ୍‌ମା ହଇଯାଏସନ୍ ଆର୍ ଆଠକାଲି ବାରମାସି ସିଆଁନ୍‌ତି ପାଏସନ୍। ଆହୋ ଅର୍‌ଜୁନ୍ ! ତମେ ଇଟା ବଢ଼େଟେ ସତ୍ ବଲି ଜାନ ଯେ ମୋର୍ ଭକତ୍‌କର୍ ବିନାଶ ନାଇଁ ନା।୩୧।

ଆହୋ ପାରଥ ! ମାଏଝି, ବୈଶ୍ୟ, ଶୁଦୁର୍ କି ହୀନ୍ ଜାତିର୍ ଯେ ଭିଲ୍ ହଅନ୍, ସେମାନେ ଭି ମୋର୍ ଶରନ୍ ପଶିକରି ପରମ୍ ଗତିକେ ପାଏସନ୍।୩୨।

ଫେର୍ କହେମା କାଣା, ପୂଣ୍ୟକର୍ତ୍ତା, ବାମ୍‌ହନ୍ ଆର୍ ରାଜ୍‌ରୁଷି ଭକତ୍‌ମାନେ ମୋର୍ ଶରନ୍ ପଶିକରି ପରମ୍ ଗତି କେ ଜରୁଲ ପାଏସନ୍। ବିନ୍ ସୁଖର୍ ପାଏନ୍ ଫୁଟ୍‌କା ମୁନୁଷ୍ ଦିହି ଧରିକରି ତମେ ପାରୁପତେ ଲଗେତ୍ ମତେ ହିଁ ଭଜ।୩୩।

ମୋର୍ ନ ମନ୍ ଲଗ, ମୋର୍ ଭଗତ୍ ହ, ମୋର୍ ପୁଜାଧଜା କର, ମତେ ଜୁହାର୍ କର। ଏନ୍ତା ଭାବେ ଆତ୍‌ମାକେ ମୋର୍‌ଠାନେ ଜୁରି କରି ମୋର୍ ତୁସ୍‌ତି କଲେ ତମେ ମତେ ସଲିଟ୍ ପାଏବ।୩୪।

।।ଓଁ।।

ଶ୍ରୀମଦ୍ ଭଗବଦ୍ ଗୀତାର୍ ନଅ ଅଧିଆ ସର୍‌ଲା।

।।ହରେ କୃଷ୍ଣ।।



# ଦଶ୍ ଅଧିଆ

## ବିଭୁତି ଯୋଗ୍

ଶ୍ରୀ ଭଗବାନ୍ କହେଲେ- ହୋ ମହାବାହୁ ! ମୋର୍ ନିଦାନ୍ ଛେଦ୍ ଭେଦ୍ ଆର୍ ପ୍ରଭାବି କଥା ଫେର ଘାଏ ଶୁନ। ତମେ ମୋର୍ ବଢ଼େ ସେନୋର୍ ସିଘା ଭଗତ୍, ତମର୍ ହିତ୍ ଲାଗି ମୁଇଁ ଇ କଥା ଆର୍ ପାରେ ବଖାନ୍‌ମି ।୧ ।

ମୋର୍ ନିଲା ଖେଲାର୍ ପ୍ରକଟ୍ ଭେଦ୍ (ରହସ୍ୟ) କେ ଦେବ୍‌ତାମାନେ କି ମହାରୁଷି ମାନେ ନାଇଁ ଜାନନ୍ କାରଣ ମୁଇଁ ସେମାନ୍‌କର୍ କାରନର୍ ମୁଲ୍ ଆଏଁ ।୨ ।

ଯେ ମତେ ଅଜନ୍‌ମା ଅନାଦି ଆର୍ ମହାପୁରୁ ବଲି ତରକି ପାରସନ୍, ମୁନୁଷ୍‌କର୍ ମଏଧେଁ ସେ ଗ୍ୟାନି ଲୁକେ ସବୁ ପାପୁଁ ମୁକ୍ତ ହେସନ୍ ।୩ ।

ବୁଧି, ଗ୍ୟାନ୍, ସମ୍‌ମୋହ, କ୍ଷମା, ସତ୍, ଇନ୍ଦ୍ରିଅ ସଂନ୍‌ଜମ୍, ମନ୍ ନିଗ୍ରହ, ସୁଖ୍-ଦୁଖ୍, ସୁରଜନା-ପରଲଏ, ଡର୍-ନିଡର୍, ଅହିଂସା, ସମତା, ସନ୍‌ତୋଷ୍, ତପ୍, ଦାନ୍, ଯଶ୍-ଅପଯଶ୍ ବାଗିର୍ ଯେନ୍ କେଥନି କିସମର୍ ଭାବ୍ ପ୍ରାଣୀମାନକର୍‌ନ ରହିଛେ, ସେ ସବୁ ମୋର୍‌ନୁ ଜାତ୍ ହଇଛେ ।୪-୫ ।

ସଁସାରର୍ ଇ ସବୁ ପରଜା ସାତ୍ ମହାରୁଷିର୍‌ନୁ ଜାତ୍ ହଇଛନ୍, ତାକର୍ ଆଘଲି ଚାର୍‌ହି କୁମାର ଆର୍ ସ୍ୱାୟମ୍ଭୁବ୍ ମିତାନ୍ ଚଉଦ ମନୁ ମୋର୍‌ନୁ ଜାତ୍ ହଇଛନ୍। ଇ ସଭେ ମୋର୍‌ନ ସଧ ରଖ୍‌ସନ୍ ।୬ ।

ଯେନ୍ ଲୁକେ ମୋର୍ ଇ ବିଭୁତି ଆର୍ ଯୋଗସକ୍‌ତିକେ ଜାନ୍‌ସନ୍, ସେ ନିଝାଟ୍ ଭକ୍‌ତିଯୋଗ୍ ଥି ଜୁରି ହଇଯାଏସନ୍, ଇଥି କେନ୍‌ସି ଶଁକା ନାଇଁନ ।୭ ।

ମୁଇଁ ବାସୁଦେବ୍ ହିଁ ସବୁ ଜଗତ୍ ଜାତ୍ ହେବାର୍ କାରନ୍ ଆର୍ ମୋର୍ ବଲେ ହିଁ ସବୁ ଜଗତ୍ ଚଲୁଛେ, ଏନ୍ତା ବୁଝି କରି ବୁଧିଆ ଭକତ୍‌ମାନେ ମତେ ଅଠିପହର୍ ଭଜ୍‌ସନ୍ ।୮ ।

ଏକେସ୍‌କଟିଁ ମୋରଠାନେ ମନ୍ ପରାନ୍ ଲଗେଇକରି ଭକତ୍‌ମାନେ ମୋର୍ ଭକ୍‌ତିର୍ କଥା ଝନେ ଆର୍ ଝନେକେ କହେସନ, ହରମିସା ସନ୍‌ତୋଷ୍ ରହେସନ୍ ଆର୍ ମୋର୍ ନ ରମନ୍ କର୍‌ସନ୍ ।୯ ।

ଏକ୍ ମନେ ଏକ୍ ଧ୍ୟାନେ ପେରେମ୍‌ଥି ଭଜନ୍ କରୁଥିବାର୍ ଭକତ୍‌ମାନ୍‌କୁ ମୁଇଁ ସେ ଗ୍ୟାନ୍‌ଯୋଗ୍ ଦେସିଁ, ଜେନ୍‌ଥି କି ମତେ ସେମାନେ ପାଏସନ୍ ।୧୦ ।

ଆହୋ ଅର୍‌ଜୁନ୍! ସେମାନ୍‌କର୍ ଅନ୍ତରଭିତ୍‌ରେ ମୁଇଁ ରହିକରି ଦୟା କର୍‌ସିଁ, ତାକର୍ ଅଗ୍ୟାନର୍ ଅଁଧାର୍ କେ ଗ୍ୟାନର୍ ବଏଠାଥି ଉଜିଆମଏ କରିଦେସିଁ ।୧୧ ।

**ଅର୍‌ଜୁନ୍ କହେଲେ-** ଆପଣ ପରମ୍ ବରମହ, ପରମ୍ ଧାମ୍ ଆଉର୍ ପରମ୍ ପବିତ୍ର ଆନ୍ । କାରଣ ଆପଣକୁ ସବୁ ରୁଷିମାନେ ଦେବତାମାନ୍‌କର୍ ମୁଲ୍ ଦେବ୍‌ତା, ଅଜନ୍‌ମା, ସରବ ଠାନିଆ ବଲିକରି କହେସନ୍ । ଦେବରୁଷି ନାରଦ୍, ଅସିତ୍, ଦେବଲ ରୁଷି, ମହାରୁଷି ବ୍ୟାସ ଭି ସେନ୍ତା କହେସନ୍ ଆର୍ ଇହାଦେ ଆପଣ୍ ଖୁଦ୍ ସେକଥା ମତେ କହୁଛନ୍ ।୧୨-୧୩ ।

ହେ କେଶବ୍ ! ଆପଣ ମତେ ଯାହାକିଛୁ କହୁଛନ୍, ସେ ସବୁକେ ମୁଇଁ ସତ୍ ବଲି ମାନୁଛେଁ । ହେ ଭଗବନ୍ ! ଆପଣକର୍ ରୁପ୍‌କେ ଦେବ୍‌ତା ଆର୍ ଅସୁର୍‌ମାନେ କିହେ ନାଇଁ ଜାନନ୍ । ୧୪ ।

ହେ ଛପନ୍ କୁଟି ଜୀବର୍ ସୃଷ୍ଟିକର୍ତ୍ତା, ହେ ଇଶ୍ୱର, ହେ ଦେବାଧିଦେବ, ହେ ଜଗତ୍‌ପତି, ହେ ପୁରୁଷୋତ୍ତମ୍, ଆପଣ ନିଜେ ହିଁ ନିଜ୍‌କୁ ଜାନ୍‌ସନ୍ । । ୧୫ ।

ତ ହେ ଭଗବନ୍ ! ଯେନ୍ ବିଭୁତିର୍ ବଲେ ଆପଣ ତିର୍‌ଲୋକଥି ସମ୍‌ପଟିଆ ଅଛନ୍ ! ନିଜର ସେ ଦିବ୍ୟ ବିଭୁତିମାନ୍‌କୁ ପୁରାଭାବେ କହେବାର୍ ଲାଗି ଆପଣ ହିଁ ସମର୍ଥ ଆନ୍ । ୧୬ ।

ହେ ଯୋଗେଶ୍ୱର ! ମୁଇଁ କେନ୍‌ଥେଇ ସୁମରନ କଲେ ଆପଣକୁ ଜାନି ପାର୍‌ମି । ହେ ଭଗବନ ! ଆପଣକର୍ କେନ୍ କେନ୍ ରୁପ ଚିନ୍ତନ୍ କର୍‌ବାର୍ ଲାଏକ୍ ଆଏ । ୧୭ ।

ହେ ଜନାର୍‌ଦନ୍ ! ଆପଣକର୍ ଯୋଗଶକ୍ତି ଆର୍ ବିଭୁତି କେ ବିସ୍ତାର କରି କହୁନ୍ କେନ୍‌ତା ବଏଲେ ଆପଣକର୍ ଅମ୍‌ରୁତ୍ କଥା ଯେତେ ଶୁନ୍‌ଲେ ଭି ମୋର୍ ମନ୍ ନାଇଁ ଭର୍‌ବାର୍, ଶୁନୁଆ ବାଗିର୍ ଲାଗୁଛେଁ । ମୁଇଁ ଆର୍ ଶୁନ୍‌ବାର୍‌କେ ତରସୁଛେଁ । ୧୮ ।

**ଶ୍ରୀ ଭଗବାନ୍ କହେଲେ-** ଆହୋ କୁରୁ ବଂଶର୍ ମୁର୍‌ଧୁନିଆ ! ଇହାଦେ ମୋର୍ ଜେନ୍ ସବୁ ଦିବ୍ୟ ବିଭୁତି ରହିଛେ, ତାର୍ ଭିତ୍‌ରୁ ତମ୍‌କୁ ସିଘା ଛାଁଟ୍‌ଲା ବିଭୁତି କହେମି, କାରଣ୍ ମୋର୍ ବିସ୍ତାରର୍ ଶେଷଁ ନାଇଁନ । ୧୯ ।

ଆହୋ ଅରଜୁନ୍ ! ମୁଇଁ ସବୁ ଜିବ୍‌ଜନ୍ତୁର୍ ହୁରୁଦ୍ ଭିତରର୍ ଆତ୍ମା ଆଏଁ। ସବୁ ଛପନ୍ କୁଟି ଜୀବର୍ ମୁଲ୍, ମଝା ଆର୍ ଶେଷ ଭି ମୁଇଁ ଆଏଁ । ୨୦।

ଅଦିତିର୍ ବାର ପୁଓ ମଏଧେଁ ମୁଇଁ ବିଷ୍ଣୁ ଆଏଁ, ଉଜାଲା ମଏଧେଁ ସୂର୍ଯ୍ୟ, ଅଣନ୍‌ଚାସ୍ ପବନ୍ ମଏଧେଁ ମରିଚି ଆଉର୍ ତରାମାନ୍‌କର୍ ମଏଧେଁ ଜନ୍ ଆଏଁ । ୨୧ ।

ମୁଇଁ ବେଦ୍ ମଏଧେଁ ସାମ୍‌ବେଦ୍, ଦେବ୍‌ତା ମଏଧେଁ ଇନ୍ଦ୍ର, ଇନ୍ଦ୍ରିଅମାନକର ମଏଧେଁ ମନ୍ ଆଉର୍ ଜିବଜନ୍ତୁକର୍ ଜିବନ୍ ଚେତନା ଆଏଁ। ୨୨।

ମୁଇଁ ଏଗାର ରୁଦ୍ରର୍ ମଏଧେଁ ଶଂକର, ଯକ୍ଷ /ରାକ୍ଷସ୍ ମଏଧେଁ ତାଲେବର୍ କୁବେର୍, ଅସ୍‌ଟବସୁର୍ ମଏଧେଁ ଜୁଏ ଦେବ୍‌ତା ଆଉର୍ ପର୍‌ବତ୍ ମଏଧେଁ ସୁମେରୁ ଆଏଁ । ୨୩।

ହୋ ପାରଥ ! ଜାନିଥ ଜେ ମୁଇଁ ପୁରୁତ ମଏଧେଁ ମୁଖିଆ ବୃହସ୍‌ପତି ଆଏଁ, ସେନାପତି ମଏଧେଁ ସ୍କନ୍ଦ ଆଉର୍ ପାଏନ୍‌ଘରା ମଏଧେଁ ସାଗର୍ ଆଏଁ । ୨୪।

ମୁଇଁ ମହାରୁଷି ମଏଧେଁ ଭୁରଗୁ, ଶବଦ୍ ମଏଧେଁ ଏକ୍ ଅଖରିଆ ଓଁ, ଯଗ୍ୟ ମଏଧେଁ ଜପ୍‌ଯଗ୍ୟ ଆଉର୍ ଥାବର୍ ପର୍‌ବତ୍ ମଏଧେଁ ହିମାଳୟ ପର୍‌ବତ୍ ଆଏଁ। ୨୫ ।

ମୁଇଁ ଗଛ୍ ମଏଧେଁ ପିପଲ୍ ଗଛ୍, ଦେବ୍ ରୁଷି ମଏଧେଁ ନାରଦ୍, ଗନ୍ଧର୍ବ ମଏଧେଁ ଚିତ୍ରରଥ, ଆଉର୍ ସିଦ୍ଧ ମଏଧେଁ କପିଲ ମୁନି ଆଏଁ । ୨୬।

ମୁଁଇ ଘୁଡା ମଏଧେଁ ଉଚୈଶ୍ରବା ଯେ ଅମରୁତ୍ ସାଁଗେ ଜାତ୍ ହଇଛେ, ହାତି ମଏଧେଁ ଐରାବତ୍ ଆଉର୍ ମୁନୁଷ୍ ମଏଧେଁ ରଜା ବଲି ଜାନ।୨୭।

ମୁଇଁ ଅସ୍ତରଶସ୍ତର୍ / ହତେର୍ ମଏଧେଁ ବଜ୍ର ଆଉର୍ ଗାଏ ମଏଧେଁ କାମ ଧେନୁ ଆଏଁ। ମୁଇଁ ନିୟମନିତି ନ ଛୁଆପିଲା କର୍‌ବାରେଁ କାମ୍‌ଦେବ୍ ଆଉର୍ ସାଁପ ମଏଧେଁ ବାସୁକି ଆଏଁ ।୨୮।

ମୁଇଁ ନାଗ୍ ମଏଧେଁ ଅନନ୍ତ ନାଗ୍ (ଶେଷନାଗ୍), ପାନିର୍ ଜଁତୁ ମଏଧେଁ ବରୁନ୍ ଦେବ୍‌ତା, ପିତ୍ରୁ ମାନ୍‌କର୍ ମଏଧେଁ ଅର୍ଜମା ଆଉର୍ ଶାସକ୍ ମଏଧେଁ ଯମ୍‌ରଜା ଆଏଁ । ୨୯।

ମୁଇଁ ଦଇତ୍ୟ ମଏଧେଁ ପ୍ରହଲାଦ୍, ଗନ୍‌କାରି ମଏଧେଁ କାଲ୍, ପଶୁ ମଏଧେଁ ସିଂହ ଆଉର୍ ଚରେ ଚିରଗୁନ୍ ମଏଧେଁ ଗରୁଡ୍ ଆଏଁ।୩୦।

ମୁଇଁ ପବିତ୍ରକାରି ମଏଧେଁ ଧୁକା, ଯୋଧା ମଏଧେଁ ଶ୍ରୀରାମ୍, ଝୁରି ମଏଧେଁ ମଗର୍ ଆଉର୍ ନଏଦ୍ ମଏଧେଁ ଗଁଗା ଆଏଁ । ୩୧।

ଆହୋ ଅରଜୁନ୍! ସୁରୁସ୍‌ଠିର୍ ମୁଲ୍, ଶେଷ, ମଝା ମୁଇଁ ଆଏଁ। ମୁଇଁ ବିଦ୍ୟା ମଏଧେଁ ଅଧ୍ୟାତ୍ମ ବିଦ୍ୟା(ବରମହ ବିଦ୍ୟା) ଆଉର୍ ଝନେ ଝନ୍‌କର୍ ଗାଲିଝଗର୍ ଗୁତାଉଚ୍ଚାର/ ହଁକାବାଦିର୍ ବାଦ୍ ଆଏଁ।୩୨।

ମୁଇଁ ଅଖର୍ ମଏଧେଁ 'ଅ' କାର୍ ଆର୍ ସମାସ ମଏଧେଁ ଦ୍ୱନ୍ଦ ସମାସ୍ ଆଏଁ। ମୁଇଁ କାଲର୍ ମହାକାଲ୍ ଆଏଁ। ଚାରହି କୁତି ମୋର୍ ମୁହୁଁ ଅଛେ ଆର୍ ମୁଇଁ ସମ୍‌କର୍ ଧାରନ୍ ପୁଷନ୍ କରତା ଆଏଁ । ୩୩।

ସମ୍କର ବିନାଶକାରି 'ମରନ୍' ମୁଇଁ ଆଏଁ, ସମ୍କର ସୃଷ୍ଟିକାରି 'ଜନମ୍' ଘଲେ ମୁଇଁ ଆଏଁ। ମୁଇଁ ମାଏଝି ମାନ୍କର ମଏଧେଁ କିରତି, ଶିରି, ବାଣୀ , ସ୍ମୃତି, ମେଧା, ଧୃତି ଆର୍ କ୍ଷମା ଆଏଁ । ୩୪ ।

ମୁଇଁ ଶ୍ରୁତି ମଏଧେଁ ବଢ଼େ ସାମ୍, ଛନ୍ଦଗିତ୍ ମଏଧେଁ ଗାୟତ୍ରୀ ଛନ୍ଦ, ବାରମାସ୍ ମଏଧେଁ ମଗସିର୍ ମାସ୍ ଆଉର୍ ଛଅଟା ରୁତୁ ମଏଧେଁ ବସନ୍ତ ଆଏଁ । ୩୫ ।

ମୁଇଁ ଛଲ୍କପଟ୍ ମଏଧେଁ ଜୁଆ, ତେଜସ୍ୱୀର୍ ତେଜ୍, ଜିତାର୍ ଜିତ୍, ଉଦ୍ଯୋଗିର୍ ଚେରେଷ୍ଟା ଆଉର୍ ସାତ୍ୱିକ୍ ଲୁକର୍ ସାତ୍ୱିକ୍ ଭାବ୍ ଆଏଁ ।୩୬ ।

ମୁଇଁ ବୃଷ୍ଣି ବଉଁଶ୍ ମଏଧେଁ ବାସୁଦେବ୍ (ତମର୍ ସାଁଗର୍ ଜୁଲି), ପାନ୍ଡବ୍ ମଏଧେଁ ଧନ୍ଜଏ (ତମେ), ମୁନି ମଏଧେଁ ବ୍ୟାସ୍ଦେବ୍ ଆଉର୍ କବି ମଏଧେଁ ଶୁକ୍ରାଚାର୍ଯ୍ୟ ଆଏଁ ।୩୭ ।

ମୁଇଁ ଦମନ୍କାରିର୍ ଦଣ୍ଡ, ବିଜୟକାମିର୍ ନିତି, ଗୁପତ୍ କଥା ନାଇଁ ଫୁଟ୍ବାର୍ ମଉନ୍ ଆଉର୍ ଗ୍ୟାନି ମାନ୍କର୍ ଗ୍ୟାନ୍ ଆଏଁ । ୩୮ ।

ଆଉର୍ ଆହୋ ଅରଜୁନ୍ ! ସବୁ ଜିବଜନ୍ତୁର୍ ବିହାନ୍ (ଜନ୍ମର୍ କାରଣ) ମୁଇଁ ହିଁ ଆଏଁ କାରନ୍ ଚର୍ ଅଚର୍ କେନ୍ସି ପ୍ରାଣୀ ମୋର୍ ବିନା ନାଇଁ ଥାଆନ୍ । ୩୯ ।

ଆହୋ ପରନ୍ତପ୍ ! ମୋର୍ ଦିବ୍ୟ ବିଭୁତିର୍ ଖଏଣ୍ ନାଇଁନ। ମୁଇଁ ମୋର୍ ନିଜର୍ ବିଭୁତିର୍ ଖାଲି ନିଦାନ୍ କଥା କେତେଟା ତମ୍କୁ କହେଲି ।୪୦ ।

ଯେନ୍ ଯେନ୍ ଝିନସ୍ଥି ବିଭୁତି, କାନ୍ତି, ଶକ୍ତି ଅଛେ, ସେ ସବୁକେ ତମେ ମୋର୍ ତେଜର୍ ଭାଗେ ମାତର୍କ ବଲି ଜାନ । ୪୧ ।

ଯେ ଆହୋ ଅରଜୁନ୍ ! ଇ ଏତ୍‌କି କଥା ଜାନ୍‌ବାର ତମର୍ କାଏଁ ଦରକାର୍ ଆଏ । ଖାଲି ଜାନିଥ ଜେ, ମୁଇଁ ସାରା ସୁରୁସ୍ଠିର୍ ଭାରକେ ମୋର୍ ଥିପେ ଋଁଚେ ଯୋଗଶକ୍ତିର୍ ବଲେଁ ପୁଟ୍‌ଲେଇଁ ଧରିଛେଁ ।୪୨।

।।ଓଁ।।

ଶ୍ରୀମଦ୍ ଭଗବଦ୍ ଗୀତାର୍ ଦଶ୍ ଅଧିଆ ସର୍‌ଲା ।

।।ହରେ କୃଷ୍ଣଁ।।



# ଏଗାର ଅଧିଆ

## ବିଶ୍ୱରୁପ ଦର୍ଶନ୍ ଯୋଗ୍

**ଅର୍‌ଜୁନ୍ କହେଲେ-** ଆପଣ୍ ମତେ ଦୟା କଲେ ଆଉର୍ ଇ ଜେନ୍ ପରମ୍ ଗୁପ୍ତ ଅଧ୍ୟାତ୍‌ମ କଥା ବୁଝାଲେ, ସେଥି ମୋର ଅଗ୍ୟାନ୍ ମେଟିଗଲା । ୧ ।

କାରନ୍ ହେ କମଲ୍ ନୟନ୍ ! ମୁଇଁ ଆପଣକରନୁ ପ୍ରାଣୀମାନ୍‌କର୍ ଜନମ୍ ଆରୁ ପରଲଏ କଥା ଟିକିନିଖି କରି ଶୁନ୍‌ଲି, ଆପଣକର୍ ଅବିନାଶୀ ମହିମା ଶୁନ୍‌ଲିଁ । ୨ ।

ହେ ପରମେଶ୍ୱର୍ ! ଆପଣ ଜେନ୍ ନିଜର୍ ବନିହାଁ କଥା କହେଲେ ସେଟା ଉଆଜିବ୍ ଆଏ । ଫେର୍ ଭି ହେ ପୁରୁଷୋତ୍ତମ୍ ! ଆପଣକର୍ ତେଜ୍ ଦିବ୍ୟରୁପ୍ କେ ମୁଇଁ ଦହଦହ ଦେଖିବାର୍ ଲାଗି ଚାହୁଁଛେ ।୩।

ହେ ପର୍ଭୁ ! ଜଧିରି ଆପଣକର୍ ସେ ବିରାଟ ରୂପ ଦେଖିବାର୍ ଲାଗି ମୁଇଁ ଲାଏକ୍ ଆଏଁ ବଲି ଭାବୁଛନ୍, ତ ହେ ଯୋଗେଶ୍ୱର ! ଆପଣ ନିଜର୍ ସେ ଅମର୍ ରୁପ୍ ମତେ ଦର୍ଶନ କରଉନ୍ । ୪ ।

**ଶ୍ରୀ ଭଗବାନ୍ ବଏଲେ-**ଆହୋ ପାରଥ ! ଇହାଦେ ତମେ ମୋର୍ କେଥିନି ରଙ୍ଗର୍,କେଥିନି କିସମର୍ ଆରୁ କେଥିନି ଆକାରର୍ ଶହ ଶହ ହଜାର୍ ହଜାର୍ ଦିବ୍ୟ ରୁପ୍ ଦେଖ । ୫ ।

ହୋ ଭରତ୍‌ବଂଶିଆ ଅରଜୁନ ! ମୋର୍ ଦିହେଁ ଆଦିତ୍ୟମାନ୍‌କୁ (ଅଦିତିର୍ ବାରଝନ୍ ପୁଓକୁ),ଅସ୍‌ଟବସୁକେ, ଏଗାର ଝନ୍ ରୁଦ୍ରକୁଁ, ଦୁହି ଅଶ୍ୱିନୀକୁମାର୍‌କେ ଆର୍ ଅଣନ୍‌ଚାସ୍ ପବନ୍ କେ ଦେଖ,ଆଘ୍‌ଲି ଜେନ୍‌ଟା ନାଇଁ ଦେଖି, ମୋର୍ ସେ ଆକାଭୁତ୍ ରୁପ୍‌କେ ଘଲେ ଦେଖ ।୬।

ଆହୋ ଅରଜୁନ୍ ! ଇଛେନ୍ ମୋର୍ ଇ ଦିହର୍ ଗୁଟେ କନେ ଚରାଚର୍ ସବୁ ଜଗତ୍‌କେ ଦେଖ ଆର୍ ଯାହା କିଛୁ ଦେଖ୍‌ବାର୍ ଲାଗି ଚାହୁଁଛ ସେଟା ଭିଲ୍ ଦେଖ । ୭ ।

ହେଲେଁ ତମେ ତମର୍ ଛାଲରକତର୍ ସାଧା ଆଖିଁ ମତେ ଦେଖି ନାଇଁ ପାର । ହେଥିର୍‌ଲାଗି ମୁଇଁ ତମ୍‌କୁ ଦିବ୍ୟ ଆଏଁଖ୍ ଦଉଛେଁ, ସେଥି ତମେ ମୋର ଇଶ୍ୱର୍ ଯୋଗଶକ୍ତି ଦେଖ ।୮ ।

**ସନଜଜ କହେଲେ**-ହେ ରାଜନ୍ ! ମହାଯୋଗେଶ୍ୱର୍ ଭଗବାନ୍ ଏନ୍ତା ବଲି କହେଲା ଉତାରୁ ଅରଜୁନ୍ କେ ତାକର୍ ଦିବ୍ୟ ବିଶ୍ୱରୁପ୍ ଦେଖେଇ ଦେଲେ । ୯।

କେଥିନି ମୁହୁଁ ଆର୍ ଆଏଁଖ୍, କେଥିନି ଆକାଭୁତ୍ ରୁପ୍, ରକମ୍ ରକମର୍ ଅଲଂକାର୍ ଦିବ୍ୟ ମାଲିର୍ ପିଂଧନ୍‌ପଟା, ଚଂଦନ୍ ମଖା ଦିହି ଆର୍ କେଥିନି ଦିବ୍ୟ ଅସ୍ତରଶସ୍ତରଧାରୀ, ଏନ୍ତା ଚାରହିଆଡ଼େ ମୁହୁଁଥିବାର୍ ଭଗବାନ୍‌କର୍ ବୁର୍‌ସାଲ୍ ଗଖା ଆକାଭୁତ୍ ରୁପ୍‌କେ ଅରଜୁନ୍ ଭକା ଛାଡ୍‌ନୁ ଦେଖିଲେ । ୧୦-୧୧ ।

ଆକାଶେଁ ପାରେକେ ହଜାରେ ବେଲ୍ ଉଦ୍‌ଲେ ଯେନ୍ ଉଜାଲା ଚମକ ଦେବା,ସେଟା ଏଖେଇ ବିଶ୍ୱରୁପ୍ ପରମାତ୍‌ମାର୍ ଉଜାଲା ସାଁଗେ ସରି ନାଇଁ ହଇ ପାରେ । ୧୨ ।

ପାନ୍ଡୁର୍ ପୁଓ ଅରଜୁନ୍ ସେ ସମିଆଥି କୃଷ୍ଣ ଭଗବାନ୍‌କର ଦିହେଁ ଅଲଗ ଅଲଗ ପୁରା ଜଗତ୍‌କେ ଗୁଟେ ଭାଗେ ଥିବାର୍ ଦେଖିଲେ।୧୩।

ତାହେରୁ କାବା /ଭୋଲ୍ ହଇକରି ଅରଜୁନ୍ ତାକର୍ ରୁଆଁଟେଁକ୍‌ରା ଦିହେଁ ଗୁରଧୁ ତେଜ୍‌ବାଲା ବିଶ୍ୱରୁପ୍ କେ ସଧ ଭକ୍‌ତିଥି ମୁଁଡ଼ ଲୁଇଁକରି ଜୁହାର୍ କଲେ ଆର୍ ଜୁଡା ହାତ୍ କରି କରି ତୁସ୍‌ତି କଲେ।୧୪।

**ଅରଜୁନ୍ କହେଲେ** - ହେ ଦେବ୍! ମୁଇଁ ଆପଣଙ୍କର୍ ଦିହେଁ ସବୁ ଦେ ଦେବ୍‌ତାକେ, ଚରାଚର୍ ଜିବ୍, ପଦୁଁଫୁଲର୍ ଆସନ୍‌ଥି ଚକା ମୁଟଲା ପାରିଛନ୍ ବରମ୍‌ହାକେ, ମହାଦେବ୍‌କେ, ସବୁରୁଷିମାନ୍‌କୁ ଆର୍ ଦିବ୍ୟ ସାଁପ୍‌ମାନ୍‌କୁ ଦେଖୁଛେଁ ।୧୫।

ହେ ବିଶ୍ୱ ଇଶ୍ୱର! ମୁଇଁ ଆପଣକୁ କେଥନି ହାତ୍, ପେଟ୍, ମୁହୁଁ, ଆଏଁଖି ଆର୍ ଚରହିକୁତିର୍ ଅନନ୍ତ ରୁପ୍‌କେ ଦେଖୁଛେଁ। ମୁଇଁ ଆପଣକର୍ ମୁଲ୍, ମଝ୍, ଶେଷ କିଛୁ ଆଦିଅଁତ୍ ଦେଖି ନାଇଁ ପାର୍‌ବାର୍ ।୧୬।

ହେ ବିଷ୍ଣୁ! ଆପଣ୍ ମୁକୁଟ୍ ପିନ୍ଧିକରି ଗଦାଚକ୍ର ଧରିକରି ଅଛନ୍। ଚାରହିକୁତିର୍ ଉକିଆ, ଜୁଏ, ସୂର୍ଯ୍ୟ ଲେଖେନ୍ ଉଜାଲା, ଦେଖିଲେଁ ଆଏଖଁ ଦୁଖାବା ଆଉର୍ ସବୁଆଡୁଁ ଅପ୍ରମାଣ ରୁପ୍‌କେ ଦେଖୁଛେଁ।୧୭।

ମୋର୍ ଜାନ୍‌ତିକେ ଆପଣ୍ ହିଁ ଜାନ୍‌ବାର୍ ଲାଏକ୍ ପରମ୍ ଅକ୍ଷର ପରଂବରମହ ପରମାତ୍‌ମା,ଆପଣ ହିଁ ଇ ଜଗତର୍ ପରମ୍ ଆଶ୍ରା, ଆପଣ ହିଁ ଅନାଦି ଧର୍ମର୍ ରକ୍ଷାକାରି ଆରୁ ଆପଣ୍ ହିଁ ଅମର୍ ସନାତନ୍ ପୁରୁଷ ଆନ୍ ।୧୮।

ଆପଣକର୍ ଆଗ୍‌ପଛ୍ ମଝା କି ଶେଷ ନାଇଁନ୍, କେଥିନିକେତେ ସାମ୍ରଥ୍‌ବାଲା, କେଥିନିକେତେ ହାତ୍, ସୂର୍ଯ୍ୟ ଜନ୍ ବାଗିର୍ ଆଏଁଖିମାନେ, ଧଂଗ୍ ଧଂଗ୍ ଜଲ୍‌ତି ଜୁଏ ହୁଲା ମୁହୁଁ ଆଉର୍ ନିଜର୍ ତେଜେଁ ଇ ଜଗତ୍‌କେ ଉକିଆ କରୁଛନ୍ ଯେ ଦେଖୁଛେଁ । ୧୯ ।

ହେ ମହାତ୍‌ମନ୍! ସରଗ୍ ଆର୍ ପୁର୍‌ଥିର୍ ମଝାମୁଝି ଇ ଗୁଟା ମୁଟା ଆକାଶ୍ ଆଉର୍ ସବୁ ଦିଗ ଖାଲି ଆପଣକର୍‌ନ ହିଁ ପୁରିଛେ । ଆପଣକର୍ ଇ ଦିବ୍ୟ ଡ଼ର୍‌ଡ଼ର୍‌ନା ରୁପ୍ ଦେଖିକରି ତିର୍‌ଲୋକ୍ ଥର୍‌ହର୍ ହଉଛେ ।୨୦।

କେତେ ଦେବ୍‌ତା ଆପଣକର୍ ଟୁଡେଁ ସମୁଛନ୍ ଆର୍ କେତେ ଯେ କର୍‌ପତର୍ ଜୁଡି କରି ଆପଣକର୍ ନାମ୍‌ଗୁନ୍ ଗାଉଛନ୍ । ତାର୍ ବାଦ୍ ମହାରୁଷି ଆର୍ ସିଦ୍ଧମାନେ ''କଲ୍ୟାଣ ହଉ'' ବଲି ବଣିହାଁ ସ୍ତବ ପଢ଼ି ପଢ଼ି ଘୁସୁର୍‌ଘୁସା ଆପଣକୁ ତୁସ୍‌ତି କରୁଛନ୍ ।୨୧।

ଯେନ୍ ଏଗାରଝନ୍ ରୁଦ୍ର, ବାରଝନ୍ ଆଦିତ୍ୟ, ଅସ୍‌ଟବସୁ, ସାଦ୍ଧ ଲୁକେ, ବିଶ୍ୱେଦେବ୍‌ମାନେ,ଦୁହି ଅଶ୍ୱିନିକୁମାର୍, ଧୁକାପବନ, ପିତୁର୍‌ପିତା, ଗନ୍ଧର୍ବ, ଯକ୍ଷ, ରାକ୍ଷସ୍ ଆଉର୍ ସିଦ୍ଧମାନେ ଅଛନ୍, ସବୁ ଖାତ୍ରୁ/ହୁଦା ଆସ୍‌ରିଜ୍ ହଇକରି ଆପଣ୍‌କୁ ଡଗୋ ଡଗୋ ଦେଖୁଛନ୍ । ୨୨ ।

ହେ ମହାବାହୁ! ଆପଣକର୍ କେଥନି ମୁହୁଁ, ଆଏଁଖି, ହାତ୍ ଜଁଘ୍, ପାଦ୍, ପେଟ୍ ଆର୍ ଗୁଜା ଗୁଜା ଦାଁତର୍ ଡର୍‌ଡର୍‌ନା ରୁପ୍ ଦେଖିକରି ସଭେ ଥର୍‌ହର୍ ହଉଛନ୍, ମୁଇଁଭି ଥରିହଲି ଯଉଛେଁ ।୨୩।

ହେ ବିଷ୍ଣୁଁ ! ଆପଣକର୍ ରୁପଟା ଆକାଶ୍‌କେ ଛି ଛେ, ଜଲି ଜଉଛେ, କେଥିନି ରଂଗର, ବଡ଼େ ଉଜଲ୍ ଆଏଁଖିବାଲା ଯେନ୍‌ଟା ଦେଖିକରି ମତେ ଅଦିରଜିଆ ଭଏ ଲାଗୁଛେ ଆର୍ ମୁଇଁ ସିଆନ୍‌ତି ନାଇଁ ପାଏବାର୍ । ୨୪ ।

ବିକଟ୍ ଦାଁତ୍ ଆର୍ ପରଲଏ ସମିଆର୍ ଜୁଏ ମିତାନ୍ ମୁହୁଁ ଦେଖିକରି ମୁଇଁ ଦିଗ୍‌ମାନ୍‌କୁ ସୋର୍ ନାଇଁ ପାଏବାର୍ ଆର୍ ସୁଖ ଭି ନାଇଁ ପାଏବାର୍ । ତ ହେ ଦେବେଶ୍ ! ହେ ଜଗତ୍‌ନିବାସ୍ ! ଆପଣ୍ ପ୍ରସନ୍ନ ହଉନ୍ । ୨୫ ।

ଧୃତରାଷ୍ଟ୍ରର୍ ପୁଓମାନେ ରଜାମାନ୍‌କର୍ ସଂଗେ ଆପଣକର୍ ଭିତ୍‌ରେ ସମୁଛନ୍ । ଭୀଷ୍ମ ପିତାମହ, ଦ୍ରୋଣାର୍ଯ୍ୟ, କରନ ଆରୁ ଆମର୍ ସାହାପଖର୍ ସିଘା ସିଘା ବିର୍‌ମାନେ ଭିଲ୍ ସଭେ ରପଟି ଆସିକରି ଆପଣକର୍ ଚୋକ୍ ଦାଁତର୍ ଡର୍‌ଡରାନି ଟୁଁଡେ ଦୁର୍‌ଦାର୍ ହେଇ କେଚ୍‌ଡେଇ ହଉଛନ୍ । କାର୍‌କାର୍ ମୁଡ୍ ଗୁଁଡ୍ ଗୁଁଡ୍ ହଇକରି ଆପଣକର୍ ଦାଁତର୍ ସଁଧିଧି ଅଲ୍‌ଝି ଜଉଛେ । ୨୬-୨୭ ।

ନଏଦ୍‌ମାନେ ଜେନ୍‌ତା ଝାଏଁ ଝାଏଁ ଉହୁଲି ଜାଇକରି ସମୁଦ୍ରଥି ଝଁପେଇ ହେସନ୍, ପୁରଥିର୍ ବୀର୍‌ମାନେ ଠିକ୍ ସେନ୍ତା ଘିଚି ହଇକରି ଆପଣକର୍ ଜଲ୍‌ତା ମୁହେଁ ସାଏଁ ସାଏଁ ସମୁଛନ୍ । ୨୮ ।

ପୋକ୍ କିର୍‌ଙ୍ଗା ଜେନ୍ତା ଉଡିଆସିକରି ଜଲ୍‌ତା ଜୁଏନ ଝାସ୍‌ଦେସନ୍, ଲୁକେ ଭିଲ୍ ହେନ୍‌ତା ମରବାର୍‌ଲାଗି ସଲୋ ସଲୋ ନରଧି ଆସିକରି ଆପଣକର୍ ଟୁଡେଁ ସମୁଛନ୍ । ୨୯ ।

ଆପଣ୍ ଜଲ୍‌ତା ଟୁଡେଁ ସେସବୁ ଲୁକ୍‌କୁଁ ରାଁପିନେଇକରି କପ୍‌ଲେଇ ଦଉଛନ୍ । ହେ ବିଷ୍ଣୁଁ ! ଆପଣକର୍ ଜୁଏର୍ ତେଜେଁ ସଁସାର୍ ସାରା ତପି ଦଉଛେ । ୩୦ ।

ଉଗ୍ରରୁପଧାରୀ ଆପଣ୍ କିଏ ଆନ୍ ମତେ କହୁନ୍, ହେ ମୁରଧୁନିଆ ଦେବ୍ତା !ଆପଣକୁ ଜୁହାର୍ ! ଆଦିପୁରୁଷ୍ ଆପଣକୁ ମୁଇଁ ବିଶେଷ କରି ଜାନ୍‌ବାର୍‌କେ ଚାହୁଛେଁ, କାରନ୍ ମୁଇଁ ଆପଣକର୍ ପବୃତ୍ତି ନାଇଁ ଜାନି ।୩୧ ।

**ଶ୍ରୀ ଭଗବାନ୍ କହେଲେ-**ମୁଇଁ ଲୁକ୍‌କର୍ ବିନାଶ୍‌କାରୀ ମହାକାଲ୍ ଆଏଁ । ଇ ସମିଆନ ଲୋକମାନ୍‌କୁଁ ବିନାଶ କର୍‌ବାର୍ ଲାଗି ମୁଇଁ ପବୃତ୍ତ/ ପ୍ରକଟ ହଇଛେଁ । ହେଥିର୍‌ଲାଗି ତମେ ଯୁଧ୍ୟ କର କି ନାଇଁକର, କୁରୁ ସେନାର୍ ଯୋଧାମାନ୍‌କର୍ ବିନାଶ୍ ହଇଜିବା । ୩୨ ।

ସେଥିର୍‌ଲାଗି ତମେ ଉଠ ! ଯଶ୍ ପାଇ ଯ ଆରୁ ଶତ୍‌ରୁମାନ୍‌କୁ ଜିତିକରି ରାଏଜ୍‌ଭୋଗ କର । ଇ ଶୁର୍‌ବୀର୍‌ମାନେ ଆଘ୍‌ଲୋ ମୋର୍ ହାତୁଁ ମରିସାରିଛନ୍, ହୋ ସବ୍ୟସାଚୀ ! ତମେ ଖାଲି ସୋଜ୍ ଉଖି/ଉଧା ହଇ ଯ ।୩୩ ।

ଦ୍ରୋଣ, ଭୀଷ୍ମ, ଜୟଦ୍ରଥ, କରନ ଆଉର୍ ମୋର୍ ହାତୁଁ ଆଘ୍‌ଲି ମରିଥିବାର୍ ବୀର୍‌ମାନ୍‌କୁ ତମେ ମାର ପୁତାର୍‌କେ ! ନାଇଁ ଡର, ଅକୁହାପୁଛା ତମେ ଯୁଧ୍ୟଥି ସତ୍‌ରୁମାନ୍‌କୁ ଜିତ୍‌ବା । ତ ତମେ ଯୁଧ୍ୟ କର । ୩୪ ।

**ସନଜଜ କହେଲେ-**ଭଗବାନ୍ କେଶବର୍ ଇ କଥା ଶୁନି କରି କିରିଟ୍‌ଧାରୀ ଅର୍‌ଜୁନ୍ ଜୁଡା ହାତେ ଡରି ଥରି କରି ଜୁହାର୍ କଲେ । ଢ଼ୋଓ ଢ଼ୋଓ ମୁଡିଆ ମାରିକରି କୁରୁତ୍ କୁରୁତ୍ ହଇକରି ଭଗବାନ୍ କୁଷ୍ଣଁକେ ଫେର୍ ଥରେ ତୁସ୍‌ତି କଲେ । ୩୫ ।

ଅର୍ଜୁନ୍ କହେଲେ-ହେ ଅନ୍ତରଯାମୀ ! ବଡ଼େ ବଣିହାଁ କଥା ଯେ, ଆପଣକର ନାଁ ଗୁନ୍ ଆର୍ ପ୍ରଭାବର୍ କିରତନ୍ଥି ଜଗତ୍ ଜହ ଉସତ୍ ହଉଛେ ଆର୍ ସେନ୍‌ହୋ/ଆହାଲାଦ୍ ଭି ପାଉଛେ। ଡର୍‌ହେଁ ଅସୁର୍‌ମାନେ ଇ ଦିଗେଁ ସେ ଦିଗେଁ ନର୍‌ଧିକରି ପଲଉଛନ୍ ଆଉର୍ ସବୁ ସିଦ୍ଧ ଲୁକେ ଉଲ୍‌ଗି ହଉଛନ୍ । ୩୬ ।

ହେ ମହାତ୍‌ମନ୍ ! ଆପଣ୍ ବ୍ରହ୍ମାକର୍ ଭି ଆଦିକରତା ଆର୍ ସମ୍‌କର୍‌ନୁ ମୁର୍‌ଧୁନିଆ ଆନ୍, ତ ଆପଣକୁ ଇମାନେ ଜୁହାର୍ ନାଇଁ କର୍‌ବେ କାଏଁ ? କାରଣ୍ ହେ ଅନନ୍ତ ! ହେ ଜଗତ୍‌ନିବାସ !ସତ୍, ଅସତ୍ ଆର୍ ତାର୍‌ନୁ ବି ଉପରେ ଆପଣ ହିଁ ଆନ୍ । ୩୭ ।

ଆପଣ୍ ଆଦିଦେବ୍ ଆର୍ ସନାତନ୍ ପୁରୁଶ୍। ଆପଣ ହଉଛନ୍ ଇ ଜଗତର୍ ପରମ୍ ଆଶ୍ରା, ଜାନ୍‌ବାର୍, ଜାନ୍‌ତିର ଲାଏକ୍ ଆର୍ ପରମ୍‌ଧାମ୍। ହେ ଅନନ୍ତରୁପ୍ ! ଆପଣକର୍ ହାତେ ଇ ସବୁ ଜଗତ୍ ପେସ୍‌ରିଛେ ।୩୮ ।

ଆପଣ୍ ଧୁକା, ଯମ୍, ଜୁଏ, ବରୁନ୍, ଜନ୍, ବ୍ରହ୍ମା ଆର୍ ବ୍ରହ୍ମାର୍ ବୁଆ ଭି ଆନ୍। ଆପଣକୁ ହଜାରେ ଜୁହାର୍ ! ଆର୍ ପାରେ ଜୁହାର୍ ! ଛନ୍‌ଛନ୍‌କେ ଜୁହାର ! ! ଜୁହାର ! ! ! ।୩୯ ।

ହେ ଅନନ୍ତ ବଲବାନ୍ ! ଆପଣକୁ ଆଗାଡୁ ଆର୍ ପଛାଡୁ ଭି ଜୁହାର ! ହେ ସର୍ବାତ୍‌ମନ୍ ! ଆପଣ୍‌କୁ ଚାରହିଦିଗୁଁ ଜୁହାର୍, କାରନ୍ ଆପଣ ଅନନ୍ତ ପରାକ୍ରମୀ, ଆଉର୍ ସଁସାର୍‌କେ ପଏର୍‌ଛା ବ୍ୟାପିଛନ୍। ତ ଆପଣ ହିଁ ସର୍ବରୁପି ଆନ୍। ୪୦ ।

ଆପଣକୁ ନାଇଁ ଚିନ୍‌ହିକରି ଅଜାନ୍‌ତେ ମୁଇଁ ପେରେମ୍‌ଥି ହଉ କି ଭୁଲ୍‌ଚୁକ୍‌ଥି ହଉ ହେ କୃଷ୍ଣ ! ହେ ଯାଦବ ! ହେ ସଖା ! ବଲି ବିନ୍ ବୁଝିଶୁଝି ଏକେସାଏର୍ କହି ଦେଇଛେଁ । ହେ ଅଚ୍ୟୁତ୍ ! ଖିଆପିଆ, ଶୁଆବସା, ବୁଲାଖେଲା ବେଲେ ମୁଇଁ ଏକ୍‌ଲା ହଉ କି ସାଁଗ୍ ସର୍‌ସାର୍ ଆଗାଡ଼େ କେତେ ଖିଆଲ୍ ଖେଚଡ଼୍ ହଇଛେଁ, କେତେ ହୁରିଆ କରିଛେଁ । ମୋର୍ ସେଥିର୍ ଦୋଷଗୁନା ମାଫ୍ କର ପରଭୁ ।୪୧-୪୨।

ଆପଣ ଇ ଚରାଚର୍ ଜଗତର୍ ବୁଆ ଆରୁ ସବୁନୁ ବଡ଼ ମାଏନ୍‌ତା ସିଘା ଗୁରୁ । ହେ ଅନନ୍ତପ୍ରଭାବି ! ଇ ତିନ୍‌ହିଲୋକେଁ ଆପଣକର୍ ସମାନେ କିହେ ନାଇଁନ, ଅଏଧିକା ଆରୁ ହେବେ କେନ୍ତାକରି ହେଲେ ! ।୪୩।

ହେଥିରଲାଗି ହେ ପରଭୁ ! ମୁଇଁ ଆପଣକୁ ଲାଂଗଛାଟ ହେଇଁ ଢ଼ୋଓ ଢ଼ୋଓ ମୁଡିଆ ମାରୁଛେଁ । ବାପ୍ ଜେନ୍ତା ପୁଓକେ, ସାଁଗ୍ ଜେନ୍ତା ସାଁଗ୍‌କେ, ଆର୍ ଘଏଁତା ଜେନ୍ତା ମାଏପୋ କେ ମାଫ୍ କରିଦେସି ଆପଣ ଭିଲ୍ ସେନ୍ତା ମତେ ମାଫ୍ କରୁନ୍ । ୪୪ ।

ଆପଣକର୍ ଇ ନଦେଖିଲାର୍ ରୁପ୍ ମୁଇଁ ଦେଖିକରି ଉସତ୍ ହଉଛେଁ ଆଉର୍ ମୋର୍ ମନ୍ ଡ଼ରହେଁ ଥରି ଜଉଛେ । ଇଥିରଲାଗି ହେ ଦେବେଶ ! ହେ ଜଗତ୍‌ନିବାସ ! ଆପଣ ନିଜର୍ ସେ ବିଷ୍ଣୁ ରୁପ୍ କେ ଦେଖଉନ୍ ।୪୫।

ମୁଇଁ ଆପଣକର୍ ସେନ୍ତା ମକୁଟଧାରୀ ଆର୍ ଗଦାଚକ୍ରଧାରୀ ରୁପ୍ ଦେଖିବାର୍ ଲାଗି ସଧଉଛେଁ । ହେଥିର୍‌ଲାଗି ହେ ବିଶ୍ୱରୁପ୍ ! ହେ ସହସ୍ରବାହୁ ! ଆପଣ ଇ ଚତୁର୍ଭୁଜ୍ ରୁପେଁ ପରକଟ୍ ହଉନ୍ ।୪୬।

**ଶ୍ରୀ ଭଗବାନ୍ କହେଲେ-** ଆହୋ ଅରଜୁନ୍ ! ମୁଇଁ ନିଜର୍ ଯୋଗର୍ ବଲେଁ ମୋର୍ ଇ ତେଜ୍ ବିଶ୍ୱରୁପ ଖୁସ୍ ହଇକରି ତମ୍‌କୁ ଦେଖାଲିଁ। ତମର୍ ଛଡା ଆଘଲି କିହେ ଇଟା ନାଇଁ ଦେଖିଁ । ୪୭ ।

ଆହୋ ଅରଜୁନ୍ ! ମୁନୁଷ୍‌ଲୋକେଁ ଏନ୍ତା ବିଶ୍ୱରୁପ ତମର୍ ଛଡା ଦୁସ୍‌ରା କିହେ ଭି ନାଇଁ ଦେଖି। ବେଦ୍‌ପାଠ୍ ଦାନଯଗ୍ୟଁ କି ଜପତପ୍ କରି କରି ଘଲେ କିହେ ଭି ମୋର୍ ବିଶ୍ୱରୁପ୍ ଦେଖି ନାଇଁ ପାରି । ୪୮ ।

ମୋର୍ ଇ ଅତିଶେ ଡର୍‌ଡରାନି ରୁପ୍ ଦେଖିକରି ତମେ ନାଇଁ ଡର କି ମୁଢ୍ ଭେକ୍‌ଲା ବାଗିର୍ ନାଇଁ ହ। ମୋର୍ ସେ ଆଘର୍ ରୁପ୍ (ଶଁଖ୍-ଚକ୍ର-ଗଦା-ପଦ୍ମ ଧାରୀ ଚାଏରହାତ୍‌ବାଲା ରୁପ୍) ଫେର୍ ପାରେ ଦେଖ । ୪୯ ।

**ସନଜଜ କହେଲେ-** ବାସୁଦେବ୍ ଭଗବାନ୍ ଅରଜୁନ୍‌କେ ଏନ୍ତା କହିକରି ଫେରଘାଏ ସେ ଚତୁର୍ଭୁଜ ରୁପ୍ ଦେଖାଲେ। ତେତ୍‌କର୍ ସାଁତ୍ ମୁରତି ହଇକରି ଅରଜୁନ୍‌କର୍ ଡର୍ ଭାଁଗ୍‌ଲେ ।୫୦ ।

**ଅରଜୁନ୍ କହେଲେ-** ହେ ଜନାରଦନ୍ ! ଆପଣକର୍ ଇ ସାଁତ୍ ସୁନ୍ଦର୍ ମୁନୁଷରୁପ୍ ସେରଂଗେଁ ଦେଖିକରି ଇହାଦେ ମୁଇଁ ନିଡର୍ ହଇକରି ସଭାବିକ୍ ହେଲିଁ । ୫୧ ।

**ଶ୍ରୀ ଭଗବାନ୍ କହେଲେ-** ମୋର୍ ଯେନ୍ ରୁପ୍ ତମେ ଦେଖିଲ, ସେତାର୍ ଦର୍ଶନ ପାଏବାର୍‌ଟା ଜହ କାଏଡ଼୍ ଆଏ। ଦେବ୍‌ତାମାନେ ଇ ରୁପ୍ ଦେଖିବାର୍ ଲାଗି ହରଦମ୍ ଚେରେଷ୍ଟା କରସନ୍। ୫୨ ।

ତମେ ମୋର୍ ଯେନ୍ ବିଶ୍ୱରୁପ୍ ଦେଖ୍‌ଲ, ଇ ରୁପ୍‌କେ ବେଦ୍‌ପାଠ, ତପ୍, ଦାନ୍‌ଯଗ୍ୟଁ କଲେ ଭି, ଦେଖି ନାଇଁ ହଏ । ୫୩।

ଆହୋ ପରନ୍ତପ୍ ଅରଜୁନ୍! ସିରିଫ୍ ଅଏନ୍ ଭକତି ଥି ହିଁ ମୋର ବିଶ୍ୱରୁପ୍ ଦେଖିହେବା ତତ୍‌ପଗ୍ୟାନ୍ ହଇଗଲେ ମତେ ପାଇହେବା।୫୪।

ଆହୋ ଅରଜୁନ ! ମୋର୍ ଲାଗି ହିଁ ସବୁ କବାରକମ୍ ଯେ କରସି, ଯେ ମୋର୍‌ନ ମନ୍ ଲଗାସି, ଆସକ୍‌ତି ଛାଡିକରି ସବୁ ପ୍ରାଣୀରଠାନେ ଶତ୍ରୁ ଭାବ୍ ନାଇଁ ରଖେ, ସେ ଭଗତ୍ ହିଁ ମତେ ପାଏସନ୍। ୫୫।

।।ଓଁ।।

ଶ୍ରୀମଦ୍ ଭଗବଦ୍ ଗୀତାର୍ ଏଗାର୍ ଅଧିଆ ସରଲା।

।।ହରେ କୃଷ୍ଣ।।



# ବାର ଅଧିଆ
## ଭକ୍ତି ଯୋଗ

**ଅରଜୁନ୍ ପଚ୍ରାଲେ-** ଯେନ୍ ପ୍ରେମୀ ଭକତ୍‌ମାନେ ସରଲଗ୍ ଆପଣକୁ (ସାକାରରୁପକେ) ଭଜୁଥିସନ୍, ଆର୍ ଯେନ୍‌ମାନେ ଖାଲି ନିରାକାର୍ ବ୍ରହ୍ମକେ ଭଜସନ୍, ଇ ଦୁହିଁକର୍ ମଏଧୁଁ ଜହ ବଣିହାଁ ଯୁଗୀ କିଏ ଆନ୍ ? ।୧।

**ଶ୍ରୀ ଭଗବାନ୍ କହେଲେ-** ମୋର୍‌ଠାନେ ମନ୍‌ତନ୍ ଦେଇକରି ଯେନ୍ ଭକତ୍‌ମାନେ ମତେ (ସାକାରରୁପକେ) ରାଏତ୍‌ଦିନ୍‌ହର୍‌ଦମ୍ ଭଜୁଛନ୍, ମୋର୍ କହତିକେ ସେମାନେ ହଉଛନ୍ ଜହ ବଣିହାଁ ଯୁଗୀ । ୨ ।

ହେଲେ ଯେନ୍ ଲୁକେ ଇନ୍ଦ୍ରିଅମାନ୍‌କୁ ବନେକରି ଆଏତେ ରଖିକରି ମନ୍-ବୁଧିର ଉପରେ ସରବ୍‌ଠାନିଆ, ଅଚଲ୍, ନିରାକାର୍, ଅମର୍ ବ୍ରହ୍ମ କେ ସରଲଗ୍ ଧିଏଇକରି ଭଜସନ୍, ସବୁ ପ୍ରାଣୀର୍ ହିତେ ସମ୍‌କରନ ସମାନ୍ ଭାବ୍ ରଖସନ୍,ସେ ଯୁଗୀମାନେ ମତେ ହିଁ ପାଏସନ୍ । ୩-୪ ।

ସେ ନିରାକାର୍ ବ୍ରହ୍ମ ସାଧନା କେଥିନି ପିରା ତକଲିଫ୍ ଦେସି । କାରନ୍ ଦେହର୍ ଅଭିମାନୀମାନ୍‌କର୍ ଅବ୍ୟକ୍ତ ବିଷୟକ ଗତି ବଡ଼ା ଦୁଖେଁ ପରାପତ୍ ହେସି । ୫ ।

ହେଲେ ମୋର୍‌ନ ଯେନ୍ ଭକତ୍‌ମାନେ ସବୁ କରମ୍ ସଁପି ଦେଇକରି ଭକ୍‌ତିଭାବ୍‌ଥି ଲୀନ୍ ହଇକରି ମତେ ପାରୁପତେ ଲଗାତାର୍ ଭଜସନ୍, ଆହୋ ଅରଜୁନ୍ ! ମୋର୍‌ଠାନେ ମନ୍ ଦେଇଥିବାର୍ ସେ ପ୍ରେମୀ ଭଗତ୍‌ମାନ୍‌କୁଁ ମୁଇଁ ଆହାଲାଦ୍ କରି କରି ତୁରତି ହିଁ ମରନ୍ ସଁସାର ସାଗରନୁ ଲହଁକେଇ ଦେସିଁ । ୬-୭ ।

ତ ତମେ ମୋର୍ ନ ହିଁ ମନ୍ ବୁଧି ଲଗା । ତାହେରୁ ତମେ ଯେ ମୋର ଠାନେ ବାସ୍ କରବ, ଇଥି କେନ୍‌ସି ଶଁକା ନାଇଁନ । ୮ ।

ଜଦ୍‌ରି ତମେ ମୋର୍‌ନ ମନ୍ ଥାବେ ଲଗେଇ ନାଇଁ ପାର, ହେନ୍ତାହେଲେ ହୋ ଅରଜୁନ୍ ! ଯୋଗ ବଏସେରା କରି କରି ମତେ ପାଏବାର୍ ଲାଗି ଚେରେଷ୍ଟା କର । ୯ ।

ଜଦିର୍‌ବି ତମେ ସେ ବଏସେରା ଭି ନାଇଁ କରିପାର, ସିରିଫ୍ ମୋର୍ ଲାଗି କର୍ମ କର । ମୋର୍ ଲାଗି ଏନ୍ତା କରମ୍ କଲେ ଘଲେ ତମେ ସିଧି ପାଇଯିବ । ୧୦ ।

ଜଦ୍‌ରି ମତେ ପାଏବାର୍‌ଲାଗି ଯୋଗ୍‌ସାଧନା ତମେ କରି ନାଇଁ ପାର, ତ ସଂଜତ୍ ଆତ୍‌ମା ହଇକରି ତାର୍‌ମାନେ ମନ୍‌ବୁଧି କେ ଜିତି କରି ସବୁ କରମ୍‌ଫଲ୍ ତ୍ୟାଗ କରି ଦିଅ । ୧୧ ।

ବଏସେରା କର୍‌ବାର୍‌ନୁ ଗ୍ୟାନ୍‌ଟା ବଡ଼ ଆଏ, ଗ୍ୟାନ୍‌ନୁ ଧ୍ୟାନ୍‌ଟା ବଡ ଆଏ ଆର୍ ଧ୍ୟାନ୍‌ନୁ ସବୁ କରମ୍ ଫଲ୍ ତିଆଗ୍ କରିଦେବାର୍‌ଟା ବଡ୍ ଆଏ । କାରନ୍ ତ୍ୟାଗ କଲେ ସେଘଡି ହିଁ ପରମ୍ ସିଆନ୍‌ତି ପରାପତ୍ ହେସି । ୧୨ ।

ଯାର୍ ଦ୍ୱେଷ, ଅହଁକାର୍ ନାଇଁନ, ଯେ ସବୁ ପ୍ରାଣୀ କେ ସେନ୍‌ହୋ ଆର୍ ଦୟା କର୍‌ସି, ସୁଖେ ଦୁଖେ ସମାନ ଆର୍ କ୍ଷମାବାନ୍ ହେସନ୍, ଫେର୍ ଯେନ୍ ଯୁଗୀ ହର୍‌ମିସା ସନ୍‌ତୁଷ୍ ରହେସନ, ମନ୍ ଆର୍ ଇନ୍ଦ୍ରିଅମାନ୍‌କର ସାଁଗେ ଦିହିକେ ଆଏତେ ରଖିଥିସନ ଆଉର୍ ଯେ ମୋର୍‌ଠାନେ ଦୃଢ଼ ନିସ୍‌ଚେ ହଇଥିସନ୍, ଯେ ମୋର୍ ପାହାତଲେ ତାକର୍ ମନ୍‌ବୁଧି ଜୁଗ୍‌ରେଇ ଦେଇଛନ ସେମାନେ ମୋର୍ ଆହାଲାଦର୍ ଗହକିଆ ସିଘା ଭଗତ୍ ଆନ୍ । ୧୩-୧୪ ।

ଯାର୍ ଲାଗି କେନ୍‌ସି ଜୀବ୍ ମନ୍‌ବିକଲ୍ ନାଇଁ କରନ୍ କି ସେ ଖୁଦ୍ ଭି କେନ୍‌ସି ଜୀବର୍‌ଲାଗି ମନବିକଲ୍ ନାଇଁ କରେ, ଆଉର୍ ହର୍ଷ, ଅମର୍ଷ,

ଡରଭଏ, ଉଦ୍‌ବେଗ୍ ଯାର୍ ନ ନାଇଁ ଥାଏ ସେ ଭଗତ୍ ମୋର୍ ସେନ୍‌ହୋର୍ ଆନ୍। ।୧୫।

ଯେନ୍ ଲୁକେ କେନ୍‌ସି ସଧିଲିଆ ନୁହେଁସେ, ଯେ ବାହାରେ ଆର୍ ଭିତ୍‌ରେ ପଏର୍‌ଛା ସକସ୍ (ନିସତ୍ ନୁହେଁସେ), ଯାର୍ ପଖିଆପାତର୍ ନାଇଁ ଥାଏ, ଦୁଖ୍‌ନୁ ମୁକତ୍ ଆନ୍, ସେ ତିଆଗି ଭଗତ୍ ମୋର୍ ସେନ୍‌ହୋର୍ ଆନ୍।୧୬।

ଯେ କେଭେଁ ହରଷ୍ ନାଇଁ ହୁଅନ୍ କି ଦ୍ୱେଷ ବିସ୍‌ମାଦ୍ କାମନା ନାଇଁ କରନ୍ ଆଉର୍ ଯେ କି ଶୁଭ୍ ଅଶୁଭ୍ ସବୁ କର୍‌ମର୍ ତିଆଗି ସେ ଭଗତ୍ ମୋର୍ ସେନ୍‌ହୋର୍ ଆନ୍ ।୧୭।

ଯେ ମଏତର୍-ଭଗାରି, ମାନ୍-ଅପମାନ୍, ଶୀତ-ଖରା, ସୁଖ-ଦୁଖ ନ ସମାନ୍ ଆର୍ ଯାର୍ ଆସକ୍ତି ନାଇଁ ଥାଏ........।୧୮।

ଯେ ନିନ୍ଦା-ପର୍‌ସଁସା କେ ସମାନ୍ ଦେଖ୍‌ସନ୍, ଯେ ମନନ୍‌ଶୀଲ୍ ଆର୍ କେନ୍‌ସି ପର୍‌କାରେ ପେଟ୍ ପୁଷିକରି ଭି ହର୍‌ମିସା ସନ୍ତୁଷ ଆନ୍, ଯାର୍ ଘରର୍ ପରତିକେ ଆସକ୍ତି ନାଇଁ ଥାଏ, ସେ ଥିର୍ ବୁଧିଆ ଭଗତ୍ ମୋର୍ ସେନ୍‌ହୋର୍ ଆନ୍।୧୯।

ହେଲେ ଯେନ୍ ସଧିଲିଆ ଲୁକେ ମୋର୍ ଶରନ୍ ପଶିକରି ଇ ସବୁ ଧରମମଏ ଅମ୍‌ରୁତ୍, ନିସ୍‌କାମ୍ ପେରେମ୍‌ଭାବ୍‌ଥି ପିଇସନ୍, ସେ ଭଗତ୍‌ମାନେ ମୋର୍ ଅତିଶେ ସେନ୍‌ହୋର୍ ଆନ୍।୨୦।

।।ଓଁ।।

ଶ୍ରୀମଦ୍ ଭଗବଦ୍ ଗୀତାର୍ ବାର ଅଧିଆ ସର୍‌ଲା।

।।ହରେକୃଷ୍ଣ।।

# ତେର ଅଧିଆ

## କ୍ଷେତ୍ର କ୍ଷେତ୍ରଗ୍ୟାଁ ବିଭାଗ ଯୋଗ୍

**ଶ୍ରୀ ଭଗବାନ କହେଲେ-** ଆହୋ ଅରଜୁନ୍! ଇ ଦିହିକେ କ୍ଷେତ୍ର ବଲ୍ସନ୍ ଆର୍ ତତ୍‌ପକେ ଜେନ୍ ଗ୍ୟାନି ଜାନ୍‌ସନ୍, ତାହାକୁଁ କ୍ଷେତ୍ରଗ୍ୟାଁ ବଲି କହେସନ୍ ।୧।

ଆହୋ ଆରଜୁନ ! ତମେ ମତେ ସବୁ କ୍ଷେତ୍ର (ଦିହି)ର୍ କ୍ଷେତ୍ରଗ୍ୟାଁ ବଲି ଜାନ। କ୍ଷେତ୍ର ଆରୁ କ୍ଷେତ୍ରଗ୍ୟାଁ ଦୁହି ଗିଆନ୍ (ପରକୁତି ଆରୁ ପୁରୁଷ) ଜାନ୍‌ବାରଟା ଅସଲ ଗ୍ୟାନ୍ ଆଏ।୨।

ସେ କ୍ଷେତ୍ର କେନ୍ତା କାଣା ଆଏ, ତାର୍ ବିକାର୍ କାଣା, କେନ୍‌ଥୁ କାଣା ଜାତ୍ ହଇଛେ, କ୍ଷେତ୍ରଗ୍ୟାଁ କିଏ, ତାର୍ ପ୍ରଭାବ କାଣା, ସେସବୁର୍ ନିଦାନ୍ କଥା ମୋରନୁ ଶୁନ।୩।

ଇ କ୍ଷେତ୍ର ଆର୍ କ୍ଷେତ୍ରଗ୍ୟାଁର୍ କଥା ମୁନିରୁଷିମାନେ କେଥିନି ପରକାରେଁ ଗିତେ ଛନ୍ଦେ କହିଛନ୍, ବେଦ୍ ମନ୍ତରଥି ଭି କୁହାଜାଇଛେ। ବ୍ରହ୍ମସୂତ୍ରର୍ ପଦେ ଭି ଇ କଥା କୁହାଯାଇଛେ।୪।

ପଁଚ୍ ମହାଭୁତ, ଅହଁକାର, ବୁଧି ଆର୍ ପରକୁତିର୍ ଦଶି ଇନ୍ଦ୍ରିଅ, ଏକ୍ ମନ୍ ଆରୁ ପଁଚ୍ ଇନ୍ଦ୍ରିଅର୍ ଝିନସ୍-ଶବଦ୍, ପରଶ୍, ରୁପ୍, ରସ୍, ଆର୍ ଗଁଧ୍ ......।୫।

ତାରଛଡା ଇଛା, ଦ୍ୱେଷ, ସୁଖ, ଦୁଖ, ଦିହିର୍ ପିଣ୍ଡ, ଚେତନା ଆର୍ ଧୁରତି-ଇଟା ହିଁ ବିକାର୍ ମାନ୍‌କର୍ ସାଁଗେ ଇ କ୍ଷେତ୍ରର୍ ସରୁପ୍ ବଲି କୁହାଯାଏସି ।୬।

ଯାର୍ ଟକର (ଅଭିମାନ), ଦମ୍ଭ ନାଇଁନ, ଜିବ୍ ମାତରକେ ସମକରନ ଅହିଂସା, କ୍ଷମା, ମନ୍‌ବଚନ୍ ସିଧା ସାଧା, ସଧି ଭକ୍‌ତିଥି ଗୁରୁସେବା, ଦିହର୍ ଭିତର୍ ବାହାର୍ ପରଛା, ଥାବର୍ ହୁରୁଦ୍ ଆଉର୍ ମନ୍ ଦିହିର ନିଗ୍ରହ ...... ।୭।

ଇନ୍ଦ୍ରିଅ ଭୋଗ୍ ମୁରଛିକରି ଅହଁକାର୍ ସୁଇନ୍ ହେଇ, ଜନମ୍ ମରନ୍ ଜରାରୋଗ୍, ଦୁଖ୍ ଆର୍ ଦୋଷ୍ ଦରଶନ୍ ... ।୮।

ଘରଦୁଆର୍, କୁଟୁମ୍‌ବାଟୁମ୍, ଧନ୍ ସମ୍ପଦ୍ ଥି ଆସକ୍ତି ନାଇଁ ଥିଲେ, ମନ୍ କଲା ଜିନିଷ୍ ମିଳୁ କି ନାଇଁ ଚାହେଁଲା ଜିନିଷ୍ ମିଳୁ ଯେ ସମାନ୍ ଦେଖିସି .... ।୯।

ମୋରଠାନେ ହରମିସା ଅଏନ୍ ଯୋଗ୍ ଭକ୍‌ତିଥି ରହେଲେ, ଛିନାଛକା ସଫାଠାନେ ଏକ୍‌ଲା ରହେବାର୍ ସଭାବ୍, ସଁସାରୀ ଲୁକରନୁ ଧୁରିଆ ରହେବାରଟା......।୧୦।

ଭଗବତ୍ ଗିଆନ୍‌ଥି ବୁଥି ହେବାରଟା, ଆର୍ ସବୁଠାନେ ପରମାତ୍‌ମାକେ ଦେଖିବାରଟା - ଇ ସବୁକେ ଗିଆନ୍ ବଲି ଆଉର୍ ଇତାର୍ ଉଲଟା ବାକିଟା ଅଗିଆନ୍ ବଲି କୁହାଜାଇଛେ ।୧୧।

ଯେନ୍‌ଟା ଜାନ୍‌ବାର୍ କଥା ଆର୍ ଯାହାକେ ଜାନିକରି ମୁନୁଷ୍ ପରମ୍ ଆନନ୍ଦ ପାଏସି, ସେଟା ମୁଇଁ ବନେ କରି ବୁଝେଇଦେମି। ସେ ଅନାଦି ପରଂବ୍ରହ୍ମ ସତ୍ ନୁହେଁ ସେ କି ଅସତ୍ ନୁହେଁସେ।୧୨।

ତାକର ସବୁକୁତି ହାତ୍ ଗୋଡ଼୍ ଅଛେ। ଚାରହିଆଡ଼େ ଆଏଁଖି, ମୁଁଡ୍, ମୁହୁଁକାନ୍ ଅଛେ, କାରନ୍ ସେ ସଁସାରକେ ଅନାମେତ୍ ଘେରେଇ କରି ଅଛନ୍ ।୧୩।

ଇନ୍ଦ୍ରିଅର୍ ସବୁ ବିକାର୍ ତାହାକୁ ଜନାଅଛେ, ଫେର୍ ଭି ଇନ୍ଦ୍ରିଅର୍ ବାହାରେ ସେ। ଆସକ୍ତି ନାଇଁ ଥାଇକରି ଭି ସମ୍‌କର୍ ପାଲନ୍ ପୁଷନ୍ କରସନ୍ । ନିର୍‌ଗୁନ୍ ହେଇ ଭି ସବୁ ଗୁନ୍ ଭୋଗ୍ କରସନ୍ ।୧୪।

ଚରାଚର୍ ସବୁ ଜିବର୍ ଭିତ୍‌ରେ ଆର୍ ବାହାରେ ଅଛନ୍ ସେ, ଚଲ୍ ଅଚଲ୍ ସବୁ ସେ ଆନ୍, ତାକର୍ ବାରିକ୍ (ସୁକ୍ଷ୍ମ) ରୁପ୍ ଜାନି ନାଇଁ ହଏ। ସେ ଭଗତର୍ ବିଲ୍‌କୁଲ୍ ପାଶେ ଅଛନ୍ ଆର୍ ନାସ୍ତିକର୍ ଧୁରେ ଅଛନ୍।୧୫।

ସେ ପରମାତ୍‌ମା ଗୁଟେ ଆକାଶ୍ ବାଗିର୍ ହେଲେ ଭିଲ୍ ସବୁ ପ୍ରାଣୀ ଭିତ୍‌ରେ ଭାଗ୍ ଭାଗ୍ ହଇକରି ଅଛନ୍। ସେ ପରମାତ୍‌ମା ବିଷ୍ଣୁ ରୁପେଁ ପାଲନ୍‌କରତା, ମହେଶ୍ୱର୍ ରୁପେଁ ସଂହାର୍‌କରତା ଆର୍ ବ୍ରହ୍ମା ରୁପେଁ ସୁରୁସ୍‌ଠି କରତା ଆନ୍ ।୧୬।

ସବୁ ଉକିଆର୍ ଉକିଆ ସେ, ମାୟାର୍ ଛାୟା ଛି ନାଇଁ ପାରେ କେଭେଁ। ସେ ପରମାତ୍‌ମା ସମ୍‌କର୍ ଜାନ୍‌ବାର୍ ଲାଏକ୍ ଆନ୍, ତତ୍‌ପଗିଆନ୍‌ଥି ତାହାକୁ ପାଇହେସି, ସମ୍‌କର୍ ହୁରଦେ ସେ ଅଛନ୍।୧୭।

ଏନ୍ତାଭାବେ କ୍ଷେତ୍ର, ଗ୍ୟାନ ଆଉର୍ ଗ୍ୟାନ୍ କର୍‌ବାର୍ ଲାଏକ୍ (ମହାପୁରୁର) କଥା ସାନ୍‌ସୁରୁ କରି କହେଲି। ମୋର୍ ଭଗତ୍ ଇ ତତ୍‌ପ କେ ଜାନିକରି ମୋର୍ ରୁପକେ ପରାପତ୍ ହେଉଥିସନ୍।୧୮।

ପୁରକୁତି ଆର୍ ପୁରୁଷ (ଜୀବର୍ ଅତ୍‌ମା) ଇ ଦୁହିକୁଁ ଅନାଦି ବଲି ଜାନ। ସବୁଜାକର୍ ବିକାର୍ ଆରୁ ତିରଗୁନ୍ (ସତ୍ୱ, ରଜ,ତମ) ଝିନସ୍ ପରକୁତିନୁ ଜାତ୍‌ବଲି ଜାନ ।୧୯।

'କାର୍ଯ୍ୟ' ଆଉର୍ 'କରଣ' ଦୁହିଟାଜାକ ପରକୁତିନୁ ଜନମ୍ ଆନ୍ । ପରୁଷ (ଜିବାତ୍ମା) ଦୁଖର୍ ସୁଖର୍ ଭୁଗ୍ତା ଆନ୍ ।୨୦।

ପରକୁତିଥି ରହିକରି ପୁରୁଷ୍ ପରକୁତିନୁ ଜାତ୍ ତିରଗୁନ୍ ଝିନସ୍‌କେ ଭୋଗ୍ କରସି, ଯେନ୍ତା ରକମର୍ ଗୁନର୍ ସାଁଗେ ରସ୍‌ଲେ ସେନ୍ତା ରକମର୍ ଭଲ୍ ଅସାର୍ ଯୋନିଥି ଜନମ୍ ହେସି ।୨୧।

ଦିହେ ରହେଲେ ଭି ଆତ୍ମାଟା ପରମାତ୍ମା ଆଏ । ସେ ସାଖି, ଅନୁମତି ଦେସି, ପାଲନ୍ କରତା ଭରତା ଆର୍ ମହେଶର୍ ଆଏ ।୨୨।

ଏନ୍ତା ଭାବେ ଯେନ୍ ମୁନୁଷ୍ ପୁରୁଷ୍ (ନିଜର୍ ପରମାତ୍ମା ରୁପ), ଗୁନ ଆର୍ ପରକୁତିକେ ଚିନ୍‌ହି ଜାନ୍‌ସି, ସେ ସବୁ ପର୍‌କାରେ କବାର୍‌କମ୍ କରୁଥିଲେ ଭି ତାକର୍ ଫେର୍ ପାରେ ଜନମ୍ ନାଇଁ ହଏ ।୨୩।

କେତେ ଲୁକେ ପରମାତ୍ମା ମହାପୁରୁକେ ଧ୍ୟାନ୍ କରି କରି ହୁରୁଦ୍ ଭିତ୍‌ରେ ଦେଖ୍‌ସନ୍, କିଏ ଗ୍ୟାନ୍‌ଯୋଗ୍ ଥି ତାହାକୁଁ ପାଏସି ତ ଆର୍‌କିଏ କର୍ମଯୋଗଥି ପାଏସି ।୨୪।

କେତେ ଲୁକେ ଧ୍ୟାନ, ଗ୍ୟାନ୍, କର୍ମଯୋଗ୍ ନାଇଁ ଜାନ୍‌ଲେ ଭିଲ୍, ସାଧୁ ଜାନ୍‌ବାର୍ ଲୁକର୍‌ନୁ ଇ ସବୁ ଶୁନିକରି ଉପାସନା କରସନ୍ । ସେ ଶୁନ୍‌ଲା ଲୁକେ ଭି ମରନ୍ ସଁସାର୍‌କେ ଲହଁକି ଜାଏସନ୍ ।୨୫।

ଆହୋ ଅରଜୁନ! ସଁସାରେ ଚଲ୍ ଅଚଲ୍ ଯାହାକିଛୁ ଜୀବ୍ ଅଛନ୍, ସେସବୁ କ୍ଷେତ୍ର ଆର୍ କ୍ଷେତ୍ରଗ୍ୟଁର୍ ସନ୍‌ଯୋଗ୍‌ନୁ ଜାତ୍ ହଇଛନ୍ ବଲି ଜାନ ।୨୬।

ସବୁ ବିନାଶୀ ଚଲ୍ ଅଚଲ୍ ଜୀବ୍ ଭିତ୍‌ରେ ଅବିନାଶୀ ଭଗବାନ୍‌କେ ଯେ ସମାନ ଭାବେ ଥିବାର୍ ଦେଖ୍‌ସି,ସେ ହିଁ ଉଆଜିବ୍ ଦେଖ୍‌ସି ।୨୭।

ଯେନ୍ ଲୁକେ ଭଗବାନ୍‌କେ ସବୁଠାନେ ସମ୍ ପଟିଆ ସମାନ୍‌ରୁପେ ଦେଖ୍‌ସନ୍, ସେ ନିଜ୍‌କୁ ନିଜେ ନଷ୍ଟ ନାଇଁ କରି କରି ମତେ ପାଏସନ୍ ।୨୮ ।

ଯେ ସବୁ କରମ୍ ପରକୁତି ଏକା କରୁଛେ ଆଉର୍ ଆତ୍‌ମା ଅକରତା ବଲି ଜାନିଛେ ଦେଖିଛେ, ସେ ହିଁ ସଥେଁ ଦେଖ୍‌ସି ।୨୯ ।

ଯେ ଯେନ୍‌ଘଡି ସବୁ ଜୀବର୍ ଅଲ୍‌ଗା ଅଲ୍‌ଗା ଭାବ୍‌କେ ଗୁଟେ ପରମାତ୍‌ମାର୍ ଠାନେ ଦେଖ୍‌ସି ଆଉର୍ ପରମାତ୍‌ମାର୍ ଠାନୁ ସବୁ ଜିବ୍ ଉଲ୍‌ମିଛନ୍ ବଲି ଦେଖ୍‌ସି, ସେ ସେଘଡି ହିଁ ବ୍ରହ୍ମ କେ ପାଏସି ।୩୦ ।

ଆହୋ ଅରଜୁନ୍! ଅନାଦି ଆର୍ ନିରଗୁନ୍ ଆଏ ବଲିକରି ଅମର୍ ପରମାତ୍‌ମା ଦିହେଁ ରହିକରି ଭିଲ୍ କିଛୁ ନାଇଁ କରନ୍ କି କେନ୍‌ସିଥି ଲିପି ଲଟ୍‌କି ନାଇଁ ଯାଆନ୍ ।୩୧ ।

ମେଘ୍ ଯେନ୍ତା ସବୁଠାନେ (ପୁରଥିର୍ ଉପରେ) ଘେରେଇ ଡାବିକରି ଥିଲେ ଭିଲ୍ ଲଟ୍‌କି ନାଇଁ ଯାଏ, ସେନ୍ତା ଆତ୍‌ମା ସମ୍‌କର୍ ଦିହେ ଥିଲେ ଭିଲ୍ ଲଟ୍‌କି ନାଇଁ ଯାଏ ।୩୨ ।

ଆହୋ ଅରଜୁନ୍ !ଜେନ୍ତା ଗୁଟେ ସୂର୍ଯ୍ୟ ଇ ସାରା ସଁସାର୍‌କେ ଉଜାଲା କର୍‌ସି,ସେନ୍ତା ଏଖେଇ ଗୁଟେ ଆତ୍‌ମା ସବୁ କ୍ଷେତ୍ର‌କେ ଉକିଆ ଦେସି ।୩୩ ।

ଯେନ୍ ଲୁକେ ଏନ୍ତା ଭାବେଁ କ୍ଷେତ୍ର ଆଉର୍ କ୍ଷେତ୍ରଗ୍ୟଁର୍ ଫରକ୍‌କେ ଗିଆନ୍ ଆଏଁଖିଥି ଦେଖ୍‌ସନ୍, ପରକୁତିର୍ ଠାନୁ ମୁକ୍ତ ହେବାର୍ ଉପେ ଜାନିଛନ୍, ସେମାନେ ପରମାତ୍‌ମାକେ ପାଏସନ୍ ।୩୪ ।

।।ଓଁ।।

ଶ୍ରୀମଦ୍ ଭଗବଦ୍ ଗୀତାର୍ ତେର ଅଧିଆ ସରଲା ।

।।ହରେ କୃଷ୍ଣଁ।।

# ଚଉଦ ଅଧିଆ

## ତ୍ରିଗୁଣ ବିଭାଗ ଯୋଗ୍

**ଶ୍ରୀ ଭଗବାନ୍ କହେଲେ**-ଗ୍ୟାନ୍ ଭିତରର୍ ବଣିହାଁ ପରମ୍ ଗ୍ୟାନ୍ ମୁଇଁ ତମ୍‌କୁ ଫେରଥରେ ଇଛେନ୍ କହେମି, ଜେନ୍‌ଟା ଜାନିକରି ରୁଷିମାନେ ଇ ସଁସାର୍‌ନୁ ମୁକ୍ତ ହଇକରି ସିଧିକେ ପରାପତ୍ ହଇଛନ୍ ।୧ ।

ଇ ଗ୍ୟାନର୍ ଆଶ୍ରେ ଯେନ୍‌ଲୁକେ ମତେ ପାଇଛନ୍, ସେମାନେ ସୁରୁସ୍‌ଠିର୍ ସୁରଜନା ଥି ଫେର୍ ପାରେ ଜନମ୍ ନାଇଁ ହୁଅନ୍ କି ପରଲଏ ସମିଆଥି ମୁରଜମାନ୍ ନାଇଁ ହଅନ୍ ।୨ ।

ଆହୋ ଅରଜୁନ୍ ! ମୋର୍ ମହତ୍ ବ୍ରହ୍ମ ମୁଲ୍ ପରକୁତି ହଉଛେ ସବୁ ପ୍ରାଣୀର୍ ଯୋନି (ଗରଭ ଧାରନ୍ କରବାର୍ ଠାନ) ଥି ମୁଇଁ ଚେତନାର୍ ଗରଭ ଥାପନା କରସିଁ । ସେ ଜଡ୍ ଆର୍ ଚେତନ୍ ମେସ୍‌ଲେ ସବୁ ପ୍ରାଣୀ ଜନମ୍ ହେସନ୍ ।୩।

ଆହୋ ଅରଜୁନ ! କିସମ୍‌କିସମର୍ ଯୋନିଥି ଯେତ୍‌କି ଦିହିଧାରୀ ପ୍ରାଣୀ ଜନମ୍ ହେସନ୍, ତାକର ମୁଲ୍ ହଉଛେ ସେ ଗରଭଧାରୀ ମାଁ । ଆଉର୍ ମୁଇଁ ହଉଛେଁ ତାକର୍ ବିହନ୍ ଦାତା ବାପ୍ । ୪ ।

ଆହୋ ଅରଜୁନ୍! ସତ୍ୱ, ରଜ ଆର୍ ତମ-ପରକୁତିନୁ ଜାତ୍ ଇ ତିନ୍‌ଟାଗୁନ୍ ଅମର୍ ଜିବାତ୍‌ମାକେ ଦିହିଥି ଛାପିକିଥିସନ୍ ।୫ ।

ଆହୋ ନିସ୍‌ପାପ୍ ! ସେ ତିନ୍‌ହି ଗୁନ୍ ମଏଧେଁ ସତ୍ୱଗୁନ୍ ନିରମଲ୍ ଆଏ ବଲିକରି ପ୍ରକାଶ ଆର୍ ନିର୍ବିକାର ଆଏ । ହେଲେ ଇଟା ସୁଖ୍ ଆର୍ ଗ୍ୟାନ୍ ଥି ଜିବାତ୍‌ମାକେ ବାନ୍ଧିକରି ରଖିସି ।୬ ।

ଆହୋ ଅରଜୁନ୍ ! ରାଗର୍ ରଜଗୁନଟା କାମନା ଆର୍ ଆସକ୍ତିନୁ ଉଭ୍ରିସି, ସେଟା ଇ ଜିବାତ୍ମାକେ କରମ୍ ଆର୍ କରମ୍ଫଲ୍ ଫାସେ ଫସେଇଦେସି ।୭ ।

ହେଲେ ଆହୋ ଅରଜୁନ୍ ! ଦିହର୍ ଅଭିମାନି ମୁନୁଷକୁ ମାୟାମହନିଥି ଠେଲଗଉଥିବାର୍ ତମ ଗୁନ୍ ଅଗ୍ୟାନ୍‌ନୁ ଜାତ୍ ହେସି ବଲି ଜାନ। ସେଟା ଇ ଜିବାତ୍ମାକେ ବିସ୍ମାଦ୍, ନିସତ୍ ଆର୍ ଝୁମ୍‌ରାଥି ବାଧୁଁସି ।୮ ।

ଆହୋ ଅରଜୁନ୍ ! ସତ୍ୱ ଗୁନ୍ ସୁଖ୍‌ଥି ଲଗାସି, ରଜଗୁନ୍ କରମ୍‌ଥି ଲଗାସି, ତମ୍ ଗୁନ୍‌ତ ଗ୍ୟାନ୍ କେ ଢ଼ାଁପିକର ପ୍ରମାଦ୍‌ଥି ଭି ଲଗାସି ।୯।

ଆହୋ ଅରଜୁନ୍ ! ରଜଗୁନ୍ ଆର୍ ତମ୍‌ଗୁନ୍‌କେ ଜାଁକିଦେଲେ ସତ୍ୱଗୁନ୍ ଉଭ୍ରିସି, ସତ୍ୱଗୁନ୍ ଆର୍ ତମ୍ ଗୁନ୍‌କେ ଜାଁକିଦେଲେ ରଜ୍‌ଗୁନ୍ ଉଭ୍ରିସି। ସେନ୍ତା ସତ୍ୱଗୁନ୍ ଆର୍ ରଜଗୁନ୍‌କେ ଜାଁକିଦେଲେତମ୍‌ଗୁନ୍ ଉଭ୍ରିସି ।୧୦।

ଯେତେବେଲେ ଇ ଦିହେଁ ଆର୍ ଇନ୍ଦ୍ରିଅମାନ୍‌କରନ ଚେତନା ଆର୍ ବିବେକ୍ ଶକ୍ତି ଉକିଆ ବାଗିର୍ ଜାତ୍ ହେସି, ସେତ୍‌କି ବେଲେ ଜାନ୍‌ବ ଯେ ସତ୍ୱଗୁନ୍ ବଢ଼ିଛେ ।୧୧।

ଆହୋ ଅରଜୁନ୍ ! ରଜ୍‌ଗୁନ୍ ବଢ଼ଲେ ଲୋଭ୍, ପବୃତ୍ତି, ସ୍ୱାର୍ଥ ରଖିକରି କାମ୍‌ବୁତା ଅଶାନ୍ତି ଆର୍ ଭୋଗ୍ ବିଲାସ୍ ଆଡ୍‌କେ ମୁନୁଷ୍ ଘିଚି ହେସନ୍।୧୨।

ଆହୋ ଅରଜୁନ୍ ! ତମ୍‌ଗୁନ ବଢ଼୍‌ଲେ ବିବେକ୍ ବୁଧି କିଛୁ କାମ୍ ନାଇଁ କରେ। ବିସ୍‌ମାଦ୍, ଝୁମରା, ମାୟାମହଥି ମୁନୁଷ୍ ସାନିଘାଁଟି ହଇକରି ଉବାଟେ ଚାଲ୍‌ସି।୧୩।

ଯେତେବେଲେ ଇ ମୁନୁଷ୍‌କର୍ ସତ୍ୱଗୁନ୍ ବଢ଼ିକରି ଜୀବନ୍ ଯାଏସି, ସେତ୍‌କି ବେଲେ ସେ ଅଏନ୍ କାମ୍ କରୁଥିବାର୍ ଲୁକର୍ ସରଗ୍‌କେ ଯାଏସି ।୧୪।

ରଜଗୁନ୍ ବଢ଼ିକରି ମୁନୁଷ୍ ମଲେ ଫେର୍ ମୁନୁଷ୍ ଜନମ୍ ହେସି ଆଉର୍ ତମ୍‌ଗୁନ୍ ବଢ଼ିକରି ମୁନଷ୍ ମଲେ, ପଶୁ ପୋକ୍ କିରଁଗା ବାଗିର୍ ମୁଢ଼୍ ଯୋନିଥି ଜନମ୍ ହେସି ।୧୫।

ସାତ୍ୱିକ୍ କରମର୍ ଫଲ ନିରମଲ ଆଏ (ସୁଖ, ଗ୍ୟାନ୍, ବଏରାଗ୍), ରାଜସ୍ କରମର୍ ଫଲ୍ ଦୁଖ ଆଉର୍ ତାମସ୍ କରମର୍ ଫଲ୍ ଅଗ୍ୟାନ୍ ବଲି ଜାନ ।୧୬।

ସତ୍ୱ ଗୁନ୍‌ନୁ ଗ୍ୟାନ୍ ଉଦେ ହେସି, ରଜ୍‌ଗୁନ୍‌ନୁ ଲୋଭ ଆଉର୍ ତମ୍‌ଗୁନନୁ ବିସ୍‌ମାଦ୍, ମୋହ,ଅଗ୍ୟାନ୍ ଉଦେ ହେସି ।୧୭।

ସତ୍ୱଗୁନି ଉଁଚା (ସରଗ)କେ ଯାଏସନ୍, ରଜଗୁନି ମଝେଁ (ମୁନୁସ ଲୋକ୍‌ଥି) ରହେସନ୍। ତମ୍ ଗୁନି ନିଚା ଯୋନିଥି (ନରକଥି) ପଡ଼୍‌ସନ୍।୧୮।

ଯେତ୍‌କି ବେଲେ ସାଖି ବାଗିର୍ ରହିକରି ବିବେକୀ ଲୁକେ ଇ ତିନ୍‌ହିଗୁନ୍‌କେ କରତା ବଲି ଦେଖ୍‌ସନ୍ ଆର୍ ଇ ତିନ୍‌ହିଗୁନର୍ ଉପରେ ମତେ (ପରମାତ୍‌ମାକେ) ଚିନ୍‌ହି ପାରସନ୍। ସେତ୍‌କିବେଲେ ସେ ମୋର୍ ରୁପ୍‌କେ ପରାପତ୍ ହେସନ୍ ।୧୯।

ସେ ବିବେକୀ ଲୁକେ ଦିହୁଁ ଜାତ୍ ତିନ୍‌ହି ଗୁନ୍‌କେ ଡେଗିକରି ଜନମ୍ ମରନ୍ ବୁଢ଼ା ଆର୍ ସବୁ ଦୁଖୁଁ ମୁକତ୍ ହଇକରି ପରମ୍ ଆନନ୍ଦ୍ ପାଏସନ୍।୨୦।

**ଅରଜୁନ୍ ପଚ୍‌ରାଲେ** – ଇ ତିନ୍‌ହି ଗୁନ୍‌କେ ଜଏ କଲା ଲୁକର୍ ଆଚାର୍ ବେଭାର୍ କାଣା ଆଏ ? ହେ ପର୍ଭୁ ! ମୁନୁଷ କାଏଁ ବୁଧି କଲେ ତ୍ରିଗୁଣ ନୁ ବର୍ତି ଯାଏସି।୨୧।

**ଶ୍ରୀ ଭଗବାନ୍ କହେଲେ**– ଆହୋ ଅରଜୁନ୍ ! ଯେନ୍ ମୁନୁଷ୍ ସଦ୍‌ଗୁନର ପ୍ରକାଶ, ରଜଗୁନର୍ ପ୍ରବୃତ୍ତି ଆର୍ ତମଗୁନର୍ ମୋହ ଆସ୍‌ଲେ ଦ୍ୱେଷ୍ ନାଇଁ କରନ୍ କି ଇଟା ପଲେଇଗଲେ ଇଥିର୍‌ଲାଗି ‘ପସ୍‌ତେଇ ନାଇଁ ହୁଅନ ..... ।୨୨।

ଯେ ସାଖି ବାଗିର୍ ରହିକରି ଗୁନେ ବିଚଲିତ୍ ନାଇଁ ହୁଅନ, ଗୁନ୍‌ମାନେ ହିଁ ଗୁନ୍‌ମାନ୍‌କର୍ ପ୍ରବୃତ୍ତ ଜାନିକରି ପରମାତ୍‌ମାର୍ ଠାନେ ଏକ୍‌ଭାବେ ରହେସନ୍ ଆଉର୍ କେଭେଁ ଭି ବିଚଲିତ ନାଇଁ ହଇକରି ସେ ସଜେ ସେରଂଗେ ଥିସନ୍ .... ।୨୩।

ଯେ ଲଗେତ୍ ଆତ୍‌ମଭାବଥି ରହେସନ୍, ଯେ ସୁଖ୍ ଦୁଖ୍‌କେ ସମାନ ବୁଝସନ୍, ଯେ ମାଏଟ୍ ପଖନ୍ ସୁନା କେ ସମାନ ଭାବ୍‌ସନ୍, ଯେନ୍ ଗ୍ୟାନି ପ୍ରିୟ- ଅପ୍ରିୟ, ନିନ୍ଦା-ତୁସ୍‌ତି କେ ସମାନ ବଲି ବୁଝସନ୍...।୨୪।

ଯାହାର୍‌ଲାଗି ମାନ୍‌-ଅପମାନ୍‌, ମଏତର୍‌-ଭଗାରି ସମାନ୍‌, ଯାହାର୍ ସବୁ କବାରେଁ କମିହାଁ ବଲି ଟକର୍ (ଅଭିମାନ) ନାଇଁ ଥାଏ, ସେ ଲୁକେ ତିନ୍‌ହି ଗୁନର୍ ଉପ୍‌ରେ ଆନ୍ ।୨୫।

ଯେନ୍ ଲୁକେ ଅଭରସ୍‌ଠ୍ ଭକ୍‌ତିଯୋଗ୍‌ଥି ମତେ ଲଗେତ୍ ଭଜୁଥିସନ୍, ସେ ଭି ଇ ତିନ୍‌ହିଗୁନ୍‌କେ ଡେଗିକରି ବ୍ରହ୍ମକେ ପାଏବାର୍ ଲାଏକଦାର୍ ହଇଯାଏସନ୍ ।୨୬।

କାରନ୍ ମୋର୍‌ଠାନେ ସେ ଅମର୍ ପରମ୍ ବ୍ରହ୍ମ ଅମୃତର୍ ସାଁଗେ ଧର୍ମର୍ ଉସତ୍ ଆନନ୍ଦ ପ୍ରତିସ୍‌ଠିତ୍ ବଲି ଜାନ ।୨୭।

।।ଓଁ।।
ଶ୍ରୀମଦ୍ ଭଗବଦ୍ ଗୀତାର୍ ଚଉଦ ଅଧିଆ ସର୍‌ଲା ।
।।ହରେ କୃଷ୍ଣ।।



ଯାହାର୍‌ଲାଗି ମାନ୍‌-ଅପମାନ୍‌, ମଏତର୍‌-ଭଗାରି ସମାନ୍‌, ଯାହାର୍‌ ସବୁ କବାରେଁ କମିହାଁ ବଲି ଟକର୍‌ (ଅଭିମାନ) ନାଇଁ ଥାଏ, ସେ ଲୁକେ ତିନ୍‌ହି ଗୁନର୍‌ ଉପ୍‌ରେ ଆନ୍‌ ।୨୫।

ଯେନ୍‌ ଲୁକେ ଅଭରସ୍‌ଠ୍‌ ଭକ୍‌ତିଯୋଗ୍‌ଥି ମତେ ଲଗେତ୍‌ ଭଜୁଥିସନ୍‌, ସେ ଭି ଇ ତିନ୍‌ହିଗୁନ୍‌କେ ଡେଗିକରି ବ୍ରହ୍ମକେ ପାଏବାର୍‌ ଲାଏକଦାର୍‌ ହଇଯାଏସନ୍‌ ।୨୬।

କାରନ୍‌ ମୋର୍‌ଠାନେ ସେ ଅମର୍‌ ପରମ୍‌ ବ୍ରହ୍ମ ଅମୃତର୍‌ ସାଁଗେ ଧର୍ମର୍‌ ଉସତ୍‌ ଆନନ୍ଦ ପ୍ରତିସ୍‌ଠିତ୍‌ ବଲି ଜାନ ।୨୭।

।।ଓଁ।।
ଶ୍ରୀମଦ୍‌ ଭଗବଦ୍‌ ଗୀତାର୍‌ ଚଉଦ ଅଧିଆ ସର୍‌ଲା ।
।।ହରେ କୃଷ୍ଣ।।



# ପନ୍ଦର ଅଧିଆ

## ପରୁଷୋତ୍ତମ ଯୋଗ୍

**ଶ୍ରୀ ଭଗବାନ୍ କହେଲେ-** ପରମେଶ୍ୱର୍ ହଉଛନ୍ ଉଲଟା ପିପଲ୍ ଗଛ୍ ଲେଖେନ୍ ସଁସାରର୍ ଚେର୍, ବ୍ରହ୍ମା ବଡ଼ଡାହି, ବେଦ୍ ତାର୍ ପତର୍। ସେ ଗଛ୍ (ସଁସାର୍)ର୍ ତତ୍‌ପ କେ ଜେ ଜାନିଛେ, ସେ ବେଦର ନିଦାନ୍ କଥାକେ ହେଜିପାରିଛେ ।୧।

ତିରଗୁନ୍ ପାଏନ୍‌ଥି ଇ ଗଛ୍‌ଟା ଜିଇଁସି ବଢ଼୍‌ସି। ଦେବ୍‌ତା ମୁନୁଷ୍ ଆର୍ ତିର୍ଯକ୍ ବାଗିର୍ ସୁରୁ ସୁରୁ ଡାହି ପଖ୍‌ରାଥି ଇନ୍ଦ୍ରିଅଭୁଗର୍ କଅଁଲିଆ ପତର୍ ଚାରହିଆଡେ ପେସ୍‌ରେଇ ହେଇ ଢ଼ାଁପିଛେ। ମୁନୁଷ୍‌ମାନ୍‌କର୍ କରମ୍ ବଧଁନର୍ ଚେ୍‌ର ତଲୁ ଉପର୍‌କେ ଆବ୍‌ରିଛେ।୨।

ଉଲଟା ପିପଲ୍ ଗଛର୍ ରୁପ୍ ଯେନ୍ତା କୁହାଯାଇଛେ, ସେନ୍ତା ଦେଖ୍‌ବାର୍‌କେ ନାଇଁ ମିଲେ, କାରନ୍ ଇତାର୍ ମୁଲ୍ ଶେଷ ଥିତି ନାଇଁନ୍। ଅହଁକାର୍, ମମତା ଆର୍ ବାସନା ବାଗିର୍ ଟାନ୍ ଚେରର୍ ଇ ସଁସାର୍ ଗଛ କେ ବଏରାଗର୍ କୁଢ଼େର୍‌ଥି ଚୁଁଦି ହେବା ।୩।

ଯାହାକେ ପାଏଲେ ମୁନୁଷ୍ ଫେର୍ ସଁସାର୍‌କେ ନାଇଁ ଫିରେ, ସେ ପରମେଶରକେ ଅଏନ୍‌କରି ଢୁଢ଼େଁଇ ହଇକରି ନୁରବାର୍ କଥା। ଯେନ୍ ପରମେଶରନୁ ଇ ଜୁନ୍‌ହାଁ ସଁସାର୍ ଗଛ୍ ଆଁକ୍‌ରିଛେ ମୁଇଁ ସେ ମହାପୁରୁର୍ ଶରନ୍ ପଶୁଛେଁ ବଲି ଜବର୍ କରି ତାହାକୁଁ ପେଜେପାନି ଧ୍ୟାନ୍ ମନନ୍ କରବାର୍ କଥା।୪।

ଯେନ୍‌ମାନ୍‌କର ମାନ୍, କାମନା ଆର୍ ମୋହ ମେଟିଯାଇଛେ, ଯେନ୍‌ମାନେ ଆସକ୍ତି ଦୋଷ୍‌କେ ଜିତିଜାଇଛନ୍, ପରମାତ୍‌ମାର୍ ନ ଅଠିପହର୍ ଅଛନ୍ ଆରୁ ସୁଖ ଦୁଖ୍ ଗଏଁଠ୍‌ନୁ ମୁକ୍ତ ଆନ୍, ସେ ଗ୍ୟାନିମାନେ ଅମର୍ ପଦ୍‌କେ ପାଏସନ୍ ।୫।

ସେ ପରମ୍‌ପଦ୍ ଏତ୍‌କି ଉକିଆମଏ ଆଏଜେ ସୂର୍ଯ୍ୟ, ଜନ୍ କି ଜୁଏ ସେତ୍‌କି ଉଜାଲା ଦେଇ ନାଇଁ ପାରନ୍। ସେ ପରମ୍ ପଦ୍‌କେ ପାଏଲେ ମୁନୁଷ୍‌କୁଁ ସଁସାରକେ ଘୁଚି ଆସ୍‌ବାର୍‌କେ ନାଇଁ ପଡେ। ସେଟା ହିଁ ମୋର୍ ପରମ୍‌ଧାମ୍ ଆଏ ।୬।

ଇ ଦିହର୍ ସନାତନ୍ ଜୀବାତ୍‌ମା ମୋର୍ ଗୁଟେ ଭାଗ୍ ଆଏ, ଯେ କି ପ୍ରକୃତିର୍ ମନ୍ ଆର୍ ପାଁଚି ଇନ୍ଦ୍ରିଅକେ ତାର୍ ଆଡ୍‌କେ ଘିଚ୍‌ସି ।୭।

ଧୁକା ଯେନ୍ତା ଗଁଧିକେ ଠାନୁ ଠାନ୍‌କେ ବୁହିନେସି, ଆତ୍‌ମା ଭି ସେନ୍ତା ଦିହି ଛାଡ୍‌ଲା ବେଲ୍‌କେ ମନ୍, ଇନ୍ଦ୍ରିଅମାନ୍‌କୁ ସାଁଗେଧରି କରି ନୁଆଁ ଦିହେଁ ସମ୍‌ସି ।୮।

ଜୀବର୍ ଆତ୍‌ମା କାନ୍, ନାକ୍, ଆଏଁଖ୍, ଜିଭ୍, ଆର୍ ଛାଲ୍ ସାଁଗେ ମନର୍ ଉଧାଥି ଇନ୍ଦ୍ରିଅ ଭୋଗ୍ କରସି।୯।

ଆତ୍‌ମା ଜୁନ୍‌ହାଁ ଦିହି ଛାଡିକରି ନୁଆଁ ଦିହି ଧରସି, ତିରଗୁନ୍‌ଥି ସାନି ହେଇକରି ଇନ୍ଦ୍ରିଅ ଭୋଗ୍ କରସି। ତ ଭି ଆତ୍‌ମାକେ ଅଗ୍ୟାନ୍ ଲୁକେ ଚିନ୍‌ହି ନାଇଁ ପାରନ୍। ଅବ୍‌ଗା ଗ୍ୟାନ୍ ଆଁଖେଁ ବିବେକୀମାନେ ହିଁ ସେଟା ଦେଖିପାରସନ୍ ।୧୦।

ଜତ୍ନବାନ୍ ଯୁଗୀମାନେ ଭି ନିଜର୍ ଛାତିଭିତରର୍ ଆତ୍‌ମାକେ ଡୁଗିଁ ଦେଖ୍‌ସନ୍। ହେଲେଁ ଯେନ୍‌ମାନେ ନିଜର୍ ଦିହି ଭିତର୍‌କେ ପରଛା ନାଇଁକରି ସେ ମୁଢ଼ମାନେ ରାଏତ୍ ଦିନ୍ ବେଉଁତ୍ କଲେ ଭି ଇ ଆତ୍‌ମାକେ ଜାନି ନାଇଁ ପାରନ୍ ।୧୧।

ସୂର୍ଯ୍ୟ ଯେନ୍ ତେଜର୍ ବଲେଁ ସାରା ଜଗତ୍‌କେ ଉକିଆ ଦଉଛେ, ଯେନ୍ ତେଜ୍ ଜନ୍ ଆର୍ ଜୁଏ ନ ରହିଛେ, ଇ ସବୁ ଜାକର୍ ମୋର୍ ତେଜ୍ ବଲିକରି ଜାନ ।୧୨।

ମୁଇଁ ମୋର୍ ମାୟାଶକ୍ତିର୍ ବଲେ ପୁରଥିର୍ ସବୁ ଜୀବଜଁତୁକେ ପୁଟ୍‌ଲେଇଁ ଧରିଛେଁ । ମୁଇଁ ଜନ୍ ହଇକରି ସବୁ ଉଷୋଦକଷାର୍ ଗଛ୍‌କୁଁ ପୁଷ୍ଟ କରସିଁ ।୧୩।

ମୁଇଁ ହିଁ ସବୁ ପ୍ରାଣୀକର୍ ପେଟେଁ ବଏସାନର୍ ଜୁଏ ଆଏଁ । ପରାନ୍ ଆର୍ ଅପାନ ଜୁରା ପବନଥି ବଏସାନର୍ ଜୁଏ ଜଲିକରି ଚାଏର୍ ରକମର୍ ଅରନ୍ ଜିରନ୍ କରୁଛେ ।୧୪।

ମୁଇଁ ହିଁ ସବୁ ପ୍ରାଣୀକର୍ ହୁରଦେ ଅଛେଁ । ମୋର୍ ଠାନୁ ହିଁ ସ୍ମୃତି, ଗ୍ୟାନ୍ ଆର୍ ଅପୋହନ୍ (ବିଚାରବୁଧିଥି ମନର୍ ଶଁକା ମେଟାବାର୍‌ଟା) ଜାତ୍ ହେସି, ସବୁ ବେଦର୍ ସିରିଫ୍ ମୁଇଁ ଜାନ୍‌ବାର୍ ଲାଏକ୍ ଆଏଁ । ମୁଇଁ ହିଁ ବେଦାନ୍ତ କରତା ଆର୍ ମୁଇଁ ହିଁ ବେଦର୍ ଗ୍ୟାନ୍ ଆଏଁ ।୧୫।

ଇ ସଁସାରେ ମର୍ ଆଉର୍ ଅମର୍-ଏନ୍ତା ଦୁଇ କିସମର୍ ପୁରଷ୍ ଅଛନ୍ । ଇ ମାନ୍‌କର୍ ମଏଧୁଁ ସବୁ ପ୍ରାଣୀକର୍ ଦିହିଟା ମର୍‌ଆଏ ଆଉର୍ ଜିବାତ୍‌ମାଟା ଅମର୍ ଆଏ ବଲି କୁହାଯାଏସି ।୧୬।

ଇ ଦୁହି ପୁରୁଷନୁ ଅଏନ୍ ପୁରଷ୍ ତ ପରମାତ୍‌ମା ପରମେଶର ଆଁନ୍ ଯେ କି ତିନ୍‌ହି ଲୋକେଁ( ସରଗେଁ, ମରତେଁ, ପାତାଲେଁ) ସମ୍‌କର୍ ଧାରନ୍ ପୁଷନ୍ କରସନ୍ ।୧୭।

ମୁଇଁ ମର୍ /ନାଶବାନ୍ ଠାନୁ ଉପରେ ଆରୁ ଅମର୍ ଜୀବାତ୍ମା ଠାନୁ ଭିଲ୍ ଅଏନ୍ ଆଏଁ, ହେଥିରଲାଗି ଲୁକେ ମଏଧେଁ ଆର୍ ବେଦେଁ ମତେ ପୁରୁଷୋତ୍ତମ କୁହାଯାଇଛେ ।୧୮।

ଆହୋ ଭାରତ୍ ! ଯେନ୍ ଗ୍ୟାନିମାନେ ମତେ ଏନ୍ତା ଭାବେଁ ପୁରୁଷୋତ୍ତମ୍ ବଲି ଜାନ୍‌ସନ୍, ସେ ସବ୍‌ଜାନ୍‌ତା ଲୁକେ ସବୁ କିସ୍‌ମେ ହରମେସା ମତେ (ବାସୁଦେବ୍‌କେ) ହିଁ ଭଜ୍‌ସନ୍ ।୧୯।

ଆହୋ ନିସ୍‌ପାପ୍ ଅରଜୁନ ! କେଥିନି ଛେଦ୍‌ଭେଦର୍ ଇ ଶାସ୍ତର୍ ତମର୍ ଆଘେ କହେଲି । ଇଟା ଜାନିଗଲେ ମୁନଷ୍ ଗ୍ୟାନି ହେବେ ଆର୍ କୁରୁତ୍ କୁରୁତ୍ ହେବେ ।୨୦।

।।ଓଁ।।

ଶ୍ରୀମଦ୍ ଭଗବଦ୍ ଗୀତାର୍ ପଦଁର ଅଧିଆ ସରଲା ।

।।ହରେ କୃଷ୍ଣ।।



# ସୁଲହ ଅଧିଆ

## ଦେବ୍ତା ଅସୁର୍ ସମ୍ପଦ୍ ବିଭାଗ ଯୋଗ୍

**ଶ୍ରୀ ଭାଗବାନ୍ କହେଲେ-** ବିନ୍ ଡରଭଏ, ପରଛା ମନ୍, ଗିଆନ୍ ଲାଗି ଧିଆନ ଯୋଗ ନିସ୍ଠା, ସାତ୍ତ୍ୱିକ୍ ଦାନ୍, ଇନ୍ଦ୍ରିଅ ଦମନ, ଦେବ୍ତା ମହାପୁରୁ ଗୁରୁଜନର୍ ପୁଜାଧଜା, ଯଗ୍ୟଁ, ବେଦ୍ ଶାସ୍ତର ପଠନ୍, ତପ୍ (କରମ୍ ଧରମ୍ ପାଳନ ଲାଗି ଦୁଖ ସହେବାରଟା) ଆର୍ ସାଧାସିଧା ରହେବାର୍ ......... ।୧।

ଅହିଂସା (କାହାକେ କେନ୍‌ସି ପରକାରେ ଦୁଖ ନାଇଁ ଦେମାଁ) ସତ୍, ମିଠା କଥା କହେବାର୍, ରାଗରିସମି ନାଇଁ ହେବାର୍, ଅଭିମାନ୍ ତିଆଗ୍, ସିଆନ୍‌ତି ମନ୍, କାହାକେ ନିନ୍ଦା ନାଇଁ କର୍‌ବାର୍, ଦୟାବାନ୍, ଇନ୍ଦ୍ରିଅ ଜଏ, କଅଁଲିଆ, ନିରଲୁଭି........ ।୨।

ତେଜ୍, କ୍ଷମା, ଧିରଜ୍, ପରଛା ଦିହି, ସତ୍‌ରୁଭାବ୍ ନାଇଁନ, ଅଭିମାନ୍ ଶୁଇନ୍ -ଆହୋ ଅର୍‌ଜୁନ୍ ! ଇ ସବୁ ହଉଛେ ଦଏବି ସମ୍ପଦ୍ ନେଇକରି ଜନମ୍ ହଇଥିବାର୍ ଲୁକର ଗୁନ୍ ବେଭାର୍ ।୩।

ଆହୋ ପାରଥ ! ଦମ୍ଭ, ଗର୍ବ, ଅଭିମାନ୍, ରାଗ୍ ରିସ୍‌ମି, ଟେନ୍‌ହା ଆର୍ ଅଗ୍ୟାନ- ଇ ସବୁ ହଉଛେ ଆସୁରି ସମ୍ପଦ୍ ନେଇକରି ଜନ୍‌ମିଥିବାର୍ ଲୁକର୍ ଗୁନ୍ ।୪।

ଦଏବି ସମ୍ପଦ୍ ମୁକ୍‌ତି ଦେସି ଆଁର୍ ଆସୁରି ସମ୍ପଦ୍ ଫାସେ ଫସାସି । ହେଥିର୍‌ଲାଗି ହୋ ଅରଜୁନ୍ ! ତମେ ଦୁଖ୍‌ମନା ନାଇଁ ହ, କାରନ୍ ତମେ ଦଏବି ସମ୍ପଦ୍ ନେଇକରି ଜନମ୍ ହଇଛ ।୫।

ଆହୋ ଅରଜୁନ୍ ! ଜଗତେଁ ଦୁଇ ପରକାର ମୁନୁଷ୍ ଅଛନ୍ । ଗୁଟେ ଦଏବି ପରକୁତିର୍ ଆରଟା ଅସୁର ପରକୁତିର । ଦୁହିଟା ମଏଧୁଁ ଦଏବି ପରକୁତିର୍ କଥା ତ ତମକୁ କହିସାରିଛେଁ । ଇହାଦେ ମୁନ୍ଷର୍ ଅସୁର୍ ପରକୁତିର୍ କଥା ବଖାନୁଛେଁ ଶୁନ ।୬ ।

ଅସୁର୍ ସଭାବର୍ ମୁନୁଷ୍ ପ୍ରବୃତ୍ତି ନିବୃତ୍ତ କିଛୁ ନାଇଁ ଜାନନ୍ । ତ ତାକରଠାନେ ଶୌଚ୍, ସଦାଚାର୍, ସତ୍ କଥା ନାଇଁ ଥାଏ ।୭ ।

ଅସୁର୍ ପରକୁତିର୍ ମୁନୁଷ୍ମାନେ କହେସନ୍- "ଜଗତ୍ ଅସତ୍, ମହାପୁରୁ ବଲି କିଛୁ ନାଇଁନ, ମାଏଝି-ମୁନୁଷର୍ ମିଲନ୍‌ନୁ ତାରସୁକେ ସୁରୁସଠି ସୁରଜନା ହଇଛେ, ସିରିଫ୍ କାମ୍ ହିଁ ତାର୍ କାରନ୍, ଇତାରଛଡା ଆର୍ କାଏଁଟା ଅଛେ" ।୮ ।

ଇ ଭୁଲ୍ ବିଚାର୍ କରି କରି ଯାର୍ ସଭାବ୍ ଖରାପ୍ ହଇଗଲାନ ସେ ଅଲପ୍ ବୁଧିର୍ ଅପକାରି ଦୁଷ୍କରମିଆ ମୁନୁଷ୍ମାନେ ଜଗତର୍ ଅବ୍‌ଗା ବିନାଶ୍ କରବାକେ ଅଛନ୍ ।୯ ।

ଦମ୍ଭ, ଅଭିମାନ୍ ଆର୍ ଗର୍ବ ଧରିକରି ମୁନୁଷ୍ମାନେ କେନ୍‌ସି ପରକାରେ କାମନା ପୁରା ନେ ହେବାର୍ ଆଶ୍ରେ ଅଗ୍ୟାନ୍‌ଥି ଭ୍ରଷ୍ଟ ଆଚରନ୍ ଆର୍ ଭୁଲ୍ କାମ୍ କରସନ୍ ।୧୦ ।

ତାକର୍ ମରବାରତକ୍ କେଥିନି କେତେ କାମନା ଚିନ୍ତା ଥିସି, ସେମାନେ ଦିହର୍ ଭୁଗ୍ ବିଲାସ୍ କେ ଇଟା ହିଁ ସୁଖ୍ ବଲି ଭାବ୍‌ସନ୍ ।୧୧ ।

ଶହ ଶହ ଆଶାର୍ ଫାସେ ଫସିକରି ମୁନୁଷ୍ମାନେ କାମ୍ ରିସ୍‌ମିଥି ରହେସନ୍ । ବିଷୟା (ଇନ୍ଦ୍ରିଅ) ଭୋଗ୍ ଲାଗି ଅନିଏ କବାର୍ କରି କରି ଧନ୍ କୁଲ୍‌ଜିବାରଥି /ଛଁଚ୍‌ବାରଥି ମାତିଥିସନ୍ ।୧୨ ।

ସେମାନେ ଭାବ୍‌ସନ୍- 'ମୁଇଁ ଆଏଜ୍ ଇଟା ପାଏଲି ଆର୍ ତେତ୍‌କର ସେଟା ପାଏମି । ମୋର୍‌ନ ଏତେ ଧନ୍ ଅଛେ, ଆହୁରି ଏତେ କମାମିଁ' ।୧୩।

'ସେ ଶତ୍ରୁ କେ ମାରିଦେଲି, ଆରୁ ବାକି ଶତ୍ରୁ ମାନ୍‌କୁ ଭିଲ୍ ମୁଇଁ ମାରିନେମି,ମୁଇଁ ଇଶ୍ୱର, ଭୁଗି, ସିଦ୍ଧ, ବଲବାନ୍ ଆର୍ ସୁଖି' ।୧୪।

'ମୁଇଁ ବଡ଼େ ତାଲେବର୍ ଆର୍ ମୋର୍ ବଡ୍ କୁଟୁମ୍ । ମୋର୍ ସମାନେ ଆର୍ କିଏ ଅଛେ ? ମୁଇଁ ଯଗଁ୍ୟ କରମି, ଦାନ୍ ଦେମି ଆଉର୍ ମଉଜ୍ ମଜଲିସ୍ କରମି' । ଏନ୍ତା ଭାବେ ଅଜାନ୍‌ବାର୍ ମୁରୁଖ୍, ମୋହର୍ ଜାଲେ ମନ୍‌କେ ଗୁରମୁଟେଇ କରି ଭରମୁଥିସି । ବିଷୟା ଭୁଗେଁ ଆସକ୍ତ ଆସୁରି ଲୁକେ ପାପର୍ ପୁହୁରା ନରକେଁ ପଡ୍‌ସନ୍ /ଲୁଟ୍‌ପୁଟାସନ୍ ।୧୫-୧୬।

ସେଲୁକେ ନିଜେ ନିଜ୍‌କୁ ବଡ୍ ଭାବିକରି ଧନର୍ ମାନର୍ ଗରବେ ବୁଡିଥିସନ, ଶାସ୍ତର ବିଧି ଛାଡିକରି ଛୁଛା ଆଡମରେଁ ନାଁ ନିତିକେ ଲୋକ୍‌ଦେଖା ଯଗଁ୍ୟ କରସନ୍ ।୧୭।

ଅହଁକାର୍, ବଫୁ, ଗରବ୍, କାମନା ଆରୁ ରାଗରିସ୍‌ମିର୍ ରୁବାବଥି ଆସୁରି ଲୁକେ ଦୁସ୍‌ରାମାନ୍‌କୁ ନିନ୍ଦା କରସନ୍ । ସେ ନିଜର୍ ପରହର୍ ଦିହେଁ ଥିବାର୍ ମତେ (ଅନ୍ତରଯାମିକେ) ଦ୍ୱେଷ୍ କରସନ୍ ।୧୮।

ସେ ଦ୍ୱେଷ୍ କରୁଥିବାର୍ ନିସ୍ଠୁର୍ ଅଧମ୍ ଖେକା ମୁନୁଷ୍‌କୁ ମୁଇଁ ସଁସାରେ ପାରକେ ପାର୍ ଅସୁର୍ ଯୋନିଥି ଫିକ୍‌ସିଁ ।୧୯।

ଆହୋ ଅରଜୁନ୍ ! ସେ ମୁଢ଼ ଲୁକେ ମତେ ନାଇଁ ପାଇକରି କେଥିନି ଜନମ୍‌ତକ୍ ଅସୁର୍ ଯୋନିଥି କିନ୍ଦ୍ରୁଥିସନ୍, ତାରଠାନୁ ଭିଲ୍ ଅଏସୋ ନିଚାଗତି ପାଏସନ୍, ତାରମାନେ ଘୋର୍ ନରକେଁ ପଡ଼ସନ୍ ।୨୦।

କାମ୍, ରାଗରିସ୍‌ମି ଆର୍ ଲୋଭ-ଇ ତିନ୍‌ଟା ନରକର୍ ଦୁଆର୍‌ବଁଧ୍ ଆଏ । ଇଟା ଆତ୍‌ମାର୍ ନାଶ୍ କରିଦେସନ୍ । ଇଥିର୍‌ଲାଗି ଇ ତିନ୍‌ହିଟାକେ ତ୍ୟାଗ୍ କରିଦେବାର୍ କଥା ।୨୧।

ଆହୋ ଅରଜୁନ୍ ! ନର୍କର୍ ଇ ତିନ୍‌ହି ବାଟ୍‌କେ ଯେ ଚୁଁଟିଦେସି ସେ ହାଏମୁକଲ୍ ହଇକରି ନିଜର୍ ଭଲ୍‌ଗତି କରସନ୍ । ସେଥି ସେ ପରମ୍ ଗତି ପାଏସନ୍ ।୨୨।

ଯେନ୍ ଲୁକେ ଶାସ୍ତରବିଧି ଛାଡିକରି ନିଜର୍ ମନ୍‌ମରଜି କବାର୍ କରସନ୍, ସେ ସିଧି ନାଇଁ ପାଆନ୍, ପରମ୍ ଗତି ନାଇଁ ପାଆନ୍ କି ସୁଖ୍ ନାଇଁ ପାଆନ୍ ।୨୩।

ସେଥିର୍‌ଲାଗି ତମେ କେନ୍‌ଟା କର୍‌ବାର୍ କଥା, କେନ୍‌ଟା ନାଇଁ କର୍‌ବାର୍ କଥା ଶାସ୍ତ୍ର ହିଁ ପ୍ରମାଣ୍ ଆଏ । ଏନ୍ତା ଜାନିକରି ତମେ ଶାସ୍ତର୍ ବିଧି ଅନ୍‌ସାରେ ନୁକୋ କରମ୍ କରି ଯ ।୨୪।

।।ଓଁ।।

ଶ୍ରୀମଦ୍ ଭଗବଦ୍ ଗୀତାର୍ ସୁଲହ ଅଧିଆ ସର୍‌ଲା ।

।।ହରେ କୃଷ୍ଣ।।



# ସତର ଅଧିଆ

## ତିନ୍ ପରକାର୍ ଶ୍ରଦ୍ଧା ବିଭାଗ ଯୋଗ୍

**ଅର୍‌ଜୁନ୍ ବଏଲେ-** ହେ କୃଷ୍ଣ ! ଯେନ୍ ଲୁକେ ଶାସ୍ତର ବିଧି ଛାଡିକରି ସଧ ରଖିକରି ଦେ ଦେବ୍‌ତା କେ ପୁଜା କର୍‌ସନ୍ ସେ ନିସ୍‌ଠା ସାତ୍ୱିକି କି ରାଜସୀ କି ତାମସୀ ଆଏ ।୧।

**ଶ୍ରୀ ଭଗବାନ୍ କହେଲେ-** ସାତ୍ୱିକି, ରାଜସି ଆର୍ ତାମସି ଶ୍ରଦ୍ଧା ମୁନୁଷମାନ୍‌କର୍ ଆଘଲିର୍ ଜନ୍‌ମର୍ ସଁସ୍‌କାର୍ ସଭାବ୍‌ନୁ ଜାତ୍ ଆଏ । ଇ ତିନ୍‌ହିଟା ମୋର୍‌ଠାନୁ ଶୁନ ।୨।

ଆହୋ ଭାରତ୍ ! ସବୁ ମୁନୁଷ୍‌କର ଶ୍ରଦ୍ଧା ସେମାନ୍‌କର୍ ଅନ୍ତକରଣର୍ ଅନୁରୁପ ହେସି । ଇ ପୁରୁଷ ସର୍‌ଧାମଏ ଆଏ । ଜେନ୍ ଲୁକର୍ ଯେନ୍ତା ଶ୍ରଦ୍ଧା, ସେ ନିଜେ ଭି ସେନ୍ତା ଗୁନର୍ ଆନ୍ ।୩।

ସାତ୍ୱିକ୍ ଲୁକେ ଦେ ଦେବ୍‌ତାକୁଁ, ରାଜସ୍ ଲୁକେ ଯକ୍ଷ ଅସୁରମାନ୍‌କୁଁ ଆଉର୍ ତାମସ୍ ଲୁକେ ଭୁତ୍ ପ୍ରେତ୍‌କେ ପୁଜା କର୍‌ସନ୍ ।୪।

ଯେନ୍ ତପି ବିନ୍ ଶାସ୍ତର୍ ବିଧିର୍ ଘୋର୍ ତପ୍ ଆଚରନ୍ କର୍‌ସନ୍, ଦମ୍ଭ, ଅହଁକାର, କାମନା, ଆସକ୍ତି ଆର୍ ବଫୁର୍ ଅଭିମାନ୍ ଥିସି ...।୫।

ସବୁ ପ୍ରାଣୀର୍ ଦିହେଁ ଆର୍ ଦିହି ଭିତ୍‌ରେ ମୁଇଁ ଅଛେଁ । ଭୁକେ ଉପାସେ ରହିକରି ମତେ ଯେ ପିଡା ଦଉଛେ, ସେ ଅଜାନ୍‌ବାର୍ ମାନ୍‌କୁ ଅସୁର ସଭାବର୍ ଲୁକେ ବଲି ଜାନ ।୬।

ଆହାର, ଯଗ୍ୟଁ, ତପ୍ ଆର୍ ଦାନ୍ ଭି ଲୁକ୍‌କର୍ ପର୍‌କୁତି ହିସାବେ ତିନ୍‌ପର୍‌କାରର୍ ଆଏ । ସେ ସବୁର୍ ଭେଦ୍ ମୋର୍ ନୁ ଶୁନ ।୭।

ଯେନ୍ ଆହାର୍ ଆଏଷ, ବୁଧି, ତାକତ, ନିରୋଗ୍, ସୁଖ୍ ଆର୍ ସେନ୍‌ହୋ ବଢ଼ାସି, ଯେନ୍ ରସାଲ୍ ଚିକନ୍ ଆହାର୍ ମନ୍‌କେ ଖୁସ୍ କରାସି ଆର୍ ଖାଦ୍ୟସାର୍ ଜହ ବେଲ୍‌ତକ୍ ରହେସି, ସେଟା ସାତ୍ୱିକ ଲୁକର୍ ବଣିହାଁ ଆହାର୍ ଆଏ ।୮।

ପିତା, ଆମିଲ୍, ନୁନିଆଁ, ଅଏସୋ ଚଟ୍, ରାଗ୍, ରୁଖାସୁଖା, ପେଟ୍‌ଜଲା ଆର୍ ଦୁଖ ଚିନ୍ତା ରୋଗ୍ ବଢ଼ାବାର୍ ଆହାର୍ ରାଜସ୍ ଲୁକର ଲାଗି ବଣିହାଁଟା ଆଏ ।୯।

ଯେନ୍ ଖାଦ୍ୟଥି ରସ୍ ନାଇଁ ଥାଏ, ଗଧୁଁଥିସି, ବାସି, ଅଏଁଠା, ଅପବିତ୍ର ଆର୍ ଶାସ୍ତ୍ର ମନା କରିଛେ, ସେଟା ତାମସ ଲୁକର୍ ବଣିହାଁ ଖାଏଦ୍ ଆଏ ।୧୦।

ଫଲର୍ ଆଶ୍ ଛାଡିକରି ଯେନ୍ ଯଗ୍ୟଁ ଶାସ୍ତ୍ର ବିଧିଥି କରାଯାଏସି, ସେଟା ସାତ୍ୱିକ ଯଗ୍ୟଁ ଆଏ ।୧୧।

ହେଲେ ଆହୋ ଅରଜୁନ୍ ! ଅଗ୍‌ବା ଦମ୍ ଦେଖାବାର୍ ଲାଗି ନହେଲେ ଲାଭର୍ ଆଶାଥି ଜେନ୍ ଯଗ୍ୟଁ କରାଯାଏସି, ସେ ଯଗ୍ୟଁ କେ ତମେ ରାଜସ୍ ବଲି ଜାନ ।୧୨।

ଯେନ୍ ଯଗ୍ୟଁଥି ମନ୍ତର୍, ଶରଧା, ଅରନ୍ ଦାନ୍ ନାଇଁଥାଏ, ଶାସ୍ତରର୍ ଉଲ୍‌ଟିଆ, ଲୁକ୍‌କୁ ସୋଜ୍ ଦେଖାବାର୍ ଲାଗି ଯଗ୍ୟଁ କରାଯାଏସି, ସେଟା ତାମସ୍ ଯଗ୍ୟଁ ବଲି କହେସନ୍ ।୧୩।

ଦେବ୍‌ତା, ବାମ୍‌ହନ୍, ଗୁରୁ ଆର୍ ଗ୍ୟାନି ଲୁକର୍ ପୁଜା, ସଫା ସୁତ୍‌ରା ପରଛା, ସରଲ ଭାବ, ବ୍ରହ୍ମଚର୍ଯ୍ୟ ଆର୍ ଅହିଂସା - ଇଟାକେ ଦିହିର୍ ତପ୍ କହେସନ୍।୧୪।

ଯେନ୍ କଥା କାହାକେ ଉଦ୍‌ବେଗ୍ ନାଇଁ କରେ, ଯେନ୍ କଥା ମିଠା, ହିତ୍‌କର, ସତ୍ କଥା, ଫେର ବେଦ୍ ଶାସ୍ତର ପଢ଼ବାର୍ ଆର ମହାପୁରୁର୍ ନାମ୍ ଜପ୍ ବଏସେରା କଲେ-ସେଟାକେ ବାଣୀର୍ ତପ୍ କହେସନ୍।୧୫।

ଚେଁଗା ମନ୍, ସାଁତ୍‌ଭାବ, ମହାପୁରୁକେ ସୋର୍ କରବାର୍ ସଭାବ୍, ମନର୍ ନିରମଲ ଭାବ୍ -ଇ ସବୁକେ ମନର୍ ତପ୍ କହେସନ୍ ।୧୬।

ବିନ୍ ଫଲ୍ ଆଶାଥି ଶ୍ରଦ୍ଧାବାନ୍ ଯୁଗୀମାନେ ଯେନ୍ ଇ ଦିହି, ବାଣୀ ଆର୍ ମନର୍ ତପ୍ କରସନ୍-ଇ ତିନ୍‌ହି ତପ୍‌କେ ସାତ୍ୱିକ ତପ୍ କହେସନ୍।୧୭।

ସତ୍‌କାର୍, ସନ୍‌ମାନ୍ ଆର୍ ପୁଜା ପାଏବାର୍ ଆଶେ ଯେନ୍ ତପ୍ କରସନ୍, ଯେନ୍‌ଟା ନିଜର୍ ଲାଭର୍ ଆଶେ ଦମ୍ଭ ଭାବ୍‌ଥି କରାଯାଏସି, ସେ ଅନିଶ୍ଚିତ ଆର୍ ଘଡେଛନେ ଲାଭର୍ ତପ୍‌କେ ରାଜସ୍ ତପ୍ କହେସନ୍।୧୮।

ଯେନ୍ ତପ୍ ମୁଢ଼ ବାଗିର୍ ଜିଦ୍ ଧରିକରି ମନ୍, ବାଣୀ ଆର୍ ଦିହିର୍ ପିଡା ସାଁଗେ ପରହର୍ ଅହିତ୍ ଲାଗି କରାଯାଏସି, ସେ ତପ୍‌କେ ତାମସ୍ ତପ୍ କହେସନ୍ ।୧୯।

'ଦାନ୍ ଦେବାର୍‌ଟା ହିଁ ଅଏନ୍ କବାର୍ ଆଏ'- ଏନ୍ତା ଭାବି କରି ଯେନ୍ ଦାନ୍ ବିନ୍ ଆଶାଥି ନିସ୍‌କାମ୍ ଭାବେ ଠିକ୍‌ଠାନ୍, ସମିଆ, ଲାଏକ୍‌ଦରନ୍ ଦିଆଯାଏସି - ସେ ଦାନ୍‌କେ ସାତ୍ୱିକ୍ ଦାନ୍ କହେସନ୍ ।୨୦।

ହେଲେ ଯେନ୍ ଦାନ୍ ଚାନ୍ଦା ଦେଲା ବାଗିର୍ କି ପ୍ରତି ଉପକାର୍ ପାଏବାର୍ ଲାଗି ନହେଲେ କିଛୁ ଲାଭର୍ ଆଶେଁ ଦିଆଯାଏସି, ସେ ଦାନ୍‌କେ ରାଜସ୍ ଦାନ୍ ବଲି କହେସନ୍ ।୨୧।

ଯେନ୍ ଦାନ୍ ବିନା ସତ୍‌କାରଥି ନହେଲେ ତିରସ୍କାର କରି ଅଲାଏକ୍ ଠାନ୍ ସମିଆଥି କି ନାଲାଏକ୍ ଲୁକ୍‌କୁ ଦିଆଯାଏସି, ସେ ଦାନ୍‌କେ ତାମସ୍ ଦାନ୍ କହେସନ୍ ।୨୨।

'ଓଁ ତତ୍ ସତ୍'- ଏନ୍ତା ତିନ୍ ପରକାର୍ ମହାପୁରୁ ବ୍ରହ୍ମକର୍ ନାମ୍ କୁହାଯାଇଛେ। ସୁରୁସ୍ଥି ସୁରୁଜିନାର୍ ସମିଆଥି ଇ ତିନ୍‌ହି ଶବ୍ଦନୁ ବାମ୍‌ହନ୍ ମାନେ, ବେଦ୍‌ମାନେ ଆର୍ ଯଗ୍ୟଁ ମାନେ ରଚିତ୍ ହଇଛନ୍।୨୩।

ସେଥିର୍‌ଲାଗି ବେଦ୍ ମନ୍ତର ପଢ଼ା ବ୍ରହ୍ମବାଦୀ ଲୁକେ ଶାସ୍ତର୍ ବିଧିଥି ଓଁ ନାମ୍ ଉଚ୍ଚାରନ୍ କରି କରି ଯଗ୍ୟଁ, ଦାନ୍ ଆର୍ ତପ୍ ମୁଲ୍ କରସନ୍।୨୪।

କଲ୍ୟାଣକାମି ଲୁକେ ଇ ସବୁ 'ତତ୍' ଆଏ ବଲି ଭାବିକରି ତତ୍ ଉଚ୍ଚାରନ୍ କରି ବିନ୍ ଫଲର୍ ଆଶେଁ କେଥିନି ପରକାରର୍ ଯଗ୍ୟଁ, ତପ୍, ଦାନ୍ କରସନ୍ ।୨୫।

ସତ୍ - ପରମାତ୍‌ମାର୍ ଇ ନାମ୍‌ଟା ସତ୍‌ଭାବ୍‌ଥି, ବଣିହାଁ ଭାବ୍‌ଥି ବେଭାର୍ ହେସି। ଆହୋ ପାରଥ ! ଅଏନ୍ କରମ୍‌ଥି ଭି 'ସତ୍' ଶବ୍ଦ ବେଭାର୍ ହେସି ।୨୬।

ଯଗ୍ୟଁ, ତପ୍ ଆର୍ ଦାନ୍‌ଥି ଯେନ୍ ନିସ୍ଥା ଥିସି, ତାହାକେ ସତ୍ ବଲି କହେସନ୍। ପରମାତ୍‌ମାର୍ ଲାଗି କରମ୍ କଲେ ବେଶକ୍ 'ସତ୍' ବଲି କହେସନ୍ ।୨୭।

ଆହୋ ଅରଜୁନ୍! ବିନ୍ ଶ୍ରଦ୍ଧାଥି ହୋମ୍, ତପ, ଦାନ୍ ଆର୍ ଉଁଷା ଶୁଭକରମ୍ କରବାର୍‌ଟାକେ 'ଅସତ୍' ବଲି କହେସନ୍। ତ ସେ ସବୁ ଜିଁ ଥଉନ୍ ଥଉନ୍ ଲାଭ୍ ନାଇଁ ଦିଏ କି ମଲା ଉତାରେଁ ଭି ଲାଭ୍ ନାଇଁ ଦିଏ ।୨୮।

।।ଓଁ।।

ଶ୍ରୀମଦ୍ ଭଗବଦ୍ ଗୀତାର୍ ସତର ଅଧିଆ ସରଲା।

।।ହରେ କୃଷ୍ଣ।।



# ଅଠର ଅଧିଆ

## ମୋକ୍ଷ ଯୋଗ୍

**ଅରଜୁନ୍ ପଚ୍ରାଲେ** - ହେ ମହାବାହୁ! ହେ ହୃଷିକେଶ୍! ହେ ବାସୁଦେବ୍! ମୁଇଁ ସନ୍ୟାସ୍ ଆର୍ ତ୍ୟାଗର୍ ଦୁହି ତତ୍ତ୍ୱକେ ଭିନ୍ ଭିନ୍ କରି ଜାନ୍‌ବାକେ ଚାହୁଁଛେଁ ।୧ ।

**ଶ୍ରୀ ଭଗବାନ୍ କହେଲେ** - କେତେ ପଣ୍ଡିତ୍‌ମାନେ କାମ୍ୟ କର୍ମର୍ ତ୍ୟାଗ୍‌କେ 'ସନ୍ୟାସ୍' ବଲି ବୁଝସନ୍ । କେତେ ଗ୍ୟାନିମାନେ ସକଲ କର୍ମର୍ ଫଲ ତ୍ୟାଗକେ 'ତ୍ୟାଗ୍' ବଲି କହେସନ୍ ।୨ ।

କେତେ ପଣ୍ଡିତ୍ କହେସନ, କରମ୍ ମାତରକେ ଦୋଷ୍ ଭରିଛେ, ତ ସେଟା ତ୍ୟାଗ୍ କର୍‌ବାର୍ କଥା । ଉଁଝା ପଣ୍ଡିତ୍‌ମାନେ କହେସନ୍ - ଯଗ୍ୟଁ, ଦାନ୍ ଆର୍ ତପ୍ କରମ୍ ତିଆଗ୍ ନାଇଁ କର୍‌ବାର୍ କଥା ।୩ ।

ଆହୋ ମୁରଧୁନିଆଁ ଭରତବଂଶର୍ ! ସନ୍ୟାସ୍ ଆର୍ ତ୍ୟାଗ୍- ଇ ଦୁହିଥୁ ଆଘୋ ତ୍ୟାଗର୍ କଥା କହୁଛେଁ ଶୁନ । ସାତ୍ତ୍ୱିକ, ରାଜସ୍ ଆର୍ ତାମସ୍ ବଲି ତିନ୍ ରକମ ତ୍ୟାଗ୍ ଅଛେ ।୪ ।

ଯଗ୍ୟଁ, ଦାନ୍ ଆର୍ ତପ୍ କରମ୍ ତିଆଗ୍ ନାଇଁ କର୍‌ବାର୍ କଥା, ବରଂ ସେଟା ବେଶକ୍ କର୍‌ବାର୍ କଥା କାଁଜେ ବଏଲେ ଇ ତିନ୍‌ଟା କରମ୍ ବୁଧିମାନ୍ ଲୁକ୍‌କୁଁ ପବିତ୍ର କରସି ।୫ ।

ତ ଆହୋ ପାର୍ଥ ! ଆସକ୍ତି ଆର୍ ଫଲ୍ କାମନା ଛାଡିକରି ଇ ଯଗ୍ୟଁ ଦାନ୍ ଆର୍ ତପ୍ କରମ୍ ସାଁଗେ ସବୁ ପୁଇନ୍ କରମ୍ ନିଶ୍ଚେ କର୍‌ବାର୍ କଥା । ଇଟା ହଉଛେ ମୋର୍ ନିଝାଟ୍ ଅଏନ୍ ମତ୍ ଆଏ ।୬ ।

ହେଲେ ନିଅତ୍ କରମ୍ ତିଆଗ୍ କର୍‌ବାର୍‌ଟା ଠିକ୍ ନୁହେଁସେ। ମାୟାମୋହଥି ପଡିକରି ସେଟା ତିଆଗ୍ କରିଦେବାର୍‌ଟାକେ ତାମସ୍ ତିଆଗ୍ କହେସନ୍ ।୭।

ଯାହା କିଛୁ କରମ୍ ଅଛେ, ସବୁ ଦୁଖର୍ ରୁପ୍ ଆଏ - ଏନ୍ତା ବୁଝିକରି ଜଦ୍‌ରି କିଏ ଦିହିକେ ଦୁଖାବା ଚିଆବା ବଲି ଡରହେ କରମ୍ ତିଆଗ୍ କରିଦେସି, ସେ ତିଆଗର୍ ଫଲ୍ ନାଇଁ ପାଏ। ଇଟାକେ ରାଜସ୍ ତିଆଗ୍ କହେସନ୍ ।୮।

ଆହୋ ଅର୍‌ଜୁନ୍! ଶାସ୍ତର୍ ବିଧିଥି କରମ୍ କର୍‌ବାର୍‌ଟା ହିଁ କରତବ୍ୟ ବଲି ଭାବିକରି ଆସକ୍ତି ଆର୍ ଫଲ୍ କାମନା ଛାଡିକରି ଯେନ୍ କରମ୍ କରାଯାଏସି, ସେଟା ହିଁ ସାତ୍ୱିକ୍ ତିଆଗ୍ ଆଏ ।୯।

ଯେନ୍ ମୁନୁଷ୍ ଅକୁଶଲ୍ କରମ୍‌ଥି ଦ୍ୱେଷ୍ ନାଇଁ ରଖେ, କି କୁଶଲ୍ କରମ୍‌ଥି ଆସକ୍ତ ନାଇଁ ହୁଅନ୍, ସେ ସତ୍ୱଗୁନର୍ ଲୁକେ ହିଁ ଶଁକାହୀନ୍, ବୁଧିମାନ୍ ଆର୍ ସଥର୍ ତିଆଗି ।୧୦।

ଦିହିଧାରୀ କେନ୍‌ସି ମୁନୁଷ୍ ପୁରାପୁରିଭାବେ ସକଲ କରମ୍ ତିଆଗ୍ କରି ନାଇଁ ପାରେ, ତ ଯେ କରମ୍ ଫଲ୍ ତିଆଗି, ତାହାକୁ ହିଁ ତିଆଗି ବଲି କହେସନ୍ ।୧୧।

ଯେନ୍ ଲୁକ କରମ୍‌ଫଲ୍ ତ୍ୟାଗ ନାଇଁ କରେ, ସେ ମଲା ଉତାରେ ଭଲ୍, ଅସାର୍ ଆର୍ ମେସ୍‌ରି ଏନ୍ତା ତିନ୍ ରକମର୍ କରମ ଫଲ୍ ନିଶ୍ଚେ ପାଏସି। ହେଲେ କରମ ଫଲ୍ ପୁରାପୁରି ତ୍ୟାଗ୍ କରିଦେଲେ ସେ କରମ୍ ଫଲ୍ କେଭେଁ କାଲେ ଭି ନାଇଁ ମିଲେ ।୧୨।

ଆହୋ ମହାବାହୁ! ସାଂଖ୍ୟ ଶାସ୍ତରଥି ସକଲ୍ କରମର୍ ସିଧି ଲାଗି ପାଁଚ୍‌ଟା କାରନ୍ କୁହାଯାଇଛେ, ସେ ସବୁ ତମ୍‌କୁ କହି ଦଉଛେଁ ସୁନି ପକ ।୧୩।

କରମ୍ ସିଧିର୍ ପାଁଚଟା କାରନ୍ ହେଲା- ୧. ଅଧିଷ୍ଠାନ୍, ୨. କରତା ୩. ଅନେକ ପରକାରର୍ କରନ୍ ୪. କେଥିନି ରକମର୍ ଭିନ୍ ଭିନ୍ ଚେରେଷ୍ଟା ଆର୍ ୫. ଦଏବ ।୧୪।

ମୁନୁଷ୍ ମନ୍, କଥା ଆର୍ ଦିହିଥି ଶାସ୍ତରର୍ ବିହିତ ଅବିହିତ ଯାହା କିଛୁ ବି କରମ୍ କରସି, ଇ ପାଁଚ୍‌ଟା ହିଁ ହଉଛେ ସେଥିର୍ ମୁଲ୍ କାରନ୍ ।୧୫।

ଯେନ୍ ମୁନୁଷ୍ ନିଜର୍ ମଇଲ୍ ବୁଧିର୍ ଲାଗି ଆତ୍‌ମାକେ କରତା ବଲି ବୁଝ୍‌ସି, ସେ ମଏଲା ବୁଧିଆ ଅଜାନ୍‌ବାର୍ ମୁନୁଷ୍ ଠିକ୍‌ଟା ନାଇଁ ବୁଝେ ।୧୬।

ଯାର୍ 'ମୁଇଁ କରତା' ବଲି ଭାବ୍ ନାଇଁନ ଆର୍ ଯାର୍ ବୁଧି ସାଂସାରିକ୍ ଜିନିଷ୍‌ଥି କି କବାରେ ବୁଥି ନାଇଁ ହଇ, ସେ ମୁନୁଷ୍ ଜଗତର୍ ସମ୍‌କୁ ମାରିଦେଲେ ଭିଲ୍ ପରକୁତ୍‌ରେ କାହାକେ ନାଇଁ ମାରେ କି ପାପ୍‌ଥି ବାଧିଁ ନାଇଁ ହଏ ।୧୭।

ଗ୍ୟାଁତା, ଗ୍ୟାନ୍ ଆର୍ ଗ୍ୟେଁୟ - ଇଟା ହଉଛେ ତିନ୍‌ବିଧ୍ କରମ୍ ପ୍ରେରଣା। କରତା, କରନ୍ ଆର୍ କ୍ରିଆ - ହଉଛେ ସେଥିର୍ ତିନ୍‌ବିଧ୍ କରମ୍ ସଂଗ୍ରହ ।୧୮।

ଗ୍ୟାନ୍, କରମ୍ ଆର୍ କର୍ତା - ଇମାନେ ଗୁନ୍‌ଭେଦ୍‌ଥି ତିନ୍ ତିନ୍ ରକମର୍ ବଲି ଶାସ୍ତରଥି କୁହାଯାଇଛେ, ସେଟା ଭି ତମେ ମୋର୍‌ନୁ ଭଲ୍‌ଭାବେ ଶୁନ ।୧୯।

ଯେନ୍ ଗ୍ୟାନର୍ ବଲେ ମୁନୁଷ୍ କେଥିନି କିସମର୍ ସବୁ ପ୍ରାଣୀର୍‌ଠାନେ ଗୁଟେ ଅମର୍ ଅଖଁଡ୍ ପରମାତ୍‌ମାକେ ସମାନ୍ ଭାବେ ରହିଥିବାର୍ ଦେଖି ପାର୍‌ସି, ସେ ଗ୍ୟାନ୍ କେ ତମେ ସାତ୍ୱିକ୍ ବଲିକରି ଜାନ ।୨୦।

ହେଲେ ଯେନ୍ ଗ୍ୟାନର୍ ବଲେ ମୁନୁଷ ସବୁ ପ୍ରାଣୀର୍ ଠାନେ ଭିନ୍ ଭିନ୍ କେଥିନି ଭାବ୍ (ଆତ୍‌ମା) ଦେଖ୍‌ସି, ସେ ଗ୍ୟାନ୍‌କେ ତମେ ରାଜସ୍ ବଲି ଜାନ ।୨୧।

ଯେନ୍ ଗ୍ୟାନ୍‌ଥି ମୁନୁଷ୍ ଏଖେଇ ଦିହିଥି ପୁରା ଆସକ୍ତ ହଇଯାଏସି, ଯେନ୍‌ଟା ଯୁକ୍ତିହୀନ, ଅର୍ଥହୀନ ଆର୍ ଛୁଛା ଫାଲ୍‌ତୁ, ସେଟାକେ ତାମସ୍ ବଲି କହେସନ୍ ।୨୨।

ଯେନ୍ କବାର୍ ଶାସ୍ତର୍ ବିଧିଥି କରାଯାଏସି, ଯେନ୍‌ଥି କରତାର୍ ଅଭିମାନ, ଫଲ କାମନା, ରାଗ୍ ଦ୍ୱେଷ୍ ନାଇଁ ଥାଏ, ସେଟାକେ ସାତ୍ୱିକ୍ କରମ୍ କହେସନ୍ ।୨୩।

ହେଲେ ଯେନ୍ କବାର୍ ଜହ ମେହେନତ୍‌ଥି ହେସି ଆର୍ ଭୋଗ୍ ଲାଲ୍‌ସାଥି ଅହଁକାରି ଲୁକେ କର୍‌ସନ୍, ସେଟାକେ ରାଜସ୍ କରମ୍ କହେସନ୍ ।୨୪।

ଯେନ୍ କବାର୍‌କମ୍ ପରାଭୋଗ୍, ଲାଭ୍‌ହାନି, ନୁକ୍‌ସାନ୍, ହିଁସା ଆର୍ ବଲବଫୁ କେ ବିଚାର ନାଇଁ କରେ, ଅଗବା ଅଗ୍ୟାନ୍ ଥୁ କରାଯାଏସି, ସେଟାକେ ତାମସ କରମ ବଲି କହେସନ୍ ।୨୫।

ଯେନ୍ କରତା ନିଃସଙ୍ଗୀ, ଅହଂବାଦୀ ନାଇଁସେ, ଧିରଜ୍ ଆର୍ ଖୁସ୍ ମିଜାଜବାଲା ଆନ ଆଉର୍ କରମର ଫଲାଫଲ୍ ଥି ନିରବିକାର୍ ଆନ୍, ସେମାନ୍‌କୁ ସାତ୍ୱିକ୍ କରତା କହେସନ୍ ।୨୬।

ଯେନ୍ କରତାର୍ ଆସକ୍ତି ଥିସି, କରମର୍ ଫଲେ ଆଶା ଥିସି, ଯେ ଲୁଭି ଆଏ, ପରକେ କଲବଡ଼ା ଦେସି, ଯେ ଅଶୁଦ୍ଧାଚାରୀ ଆର୍ ହଁସି କାଁଦି ସୁଖ୍ ଦୁଖ୍‌ଥି ବୁଡିଥିସି, ତାହାକେ ରାଜସ୍ କରତା କହେସନ୍ ।୨୭।

ଯେନ୍ କରତା ଅଯୁକ୍ତିଆ, ଅଶିକ୍ଷିତ୍ ଅଭିମାନୀ, ଲବାର୍, ହଁକ୍ରିଆ ପରର୍ ଜୀବ୍‌କା ବୁଡାସି, ଅସିଆଁନତି ଦୁଖି ବିସ୍‌ମାଦ୍‌ବାଲା, ନିସତ୍ ଆର୍ ଲେଠ୍‌ରିଆ ଆଏ, ତାହାକେ ତାମସ୍ କରତା କହେସନ୍ ।୨୮।

ଆହୋ ଧନଞ୍ଜଏ ! ବୁଧି ଆର୍ ଧୁରତି ଭି ଗୁନର୍ ଭେଦେ ତିନ୍ ରକମର୍ ଆଏ, ସେ କଥା ପୁରା ଭାବେ ଭିନ୍ ଭିନ୍ କରି କହୁଛେଁ ଶୁନିଜ ।୨୯।

ଆହୋ ପାର୍ଥ ! ଯେନ୍ ବୁଧି ପ୍ରବୃତ୍ତି ନିବୃତ୍ତିକେ, କାର୍ଯ୍ୟ-ଅକାର୍ଯ୍ୟକେ, ଭଏ-ନିରଭଏ କେ, ବଧଁନ୍ ମୋକ୍ଷକେ ଭଲ୍‌କରି ଜାନ୍‌ସି, ସେ ବୁଧି ସାତ୍ୱିକୀ ।୩୦।

ଆହୋ ପାର୍ଥ ! ମୁନୁଷ୍ ଯେନ୍ ବୁଧିଥୁ ଧରମ୍ ଅଧରମ୍, କାର୍ଯ୍ୟ ଅକାର୍ଯ୍ୟକେ ଭଲକରି ଜାନି ନାଇଁ ପାରେ, ସେ ବୁଧି ରାଜସି ।୩୧।

ଆହୋ ଅରଜୁନ୍ ! ଅଗ୍ୟାନ୍‌ଥି ଢ଼ାଁପି ହଇକରି ଯେନ୍ ବୁଧି ଅଧରମ୍ କେ ଧରମ୍ ବଲିକରି ମାନ୍‌ସି ଆର୍ ଦୁସରା ସବୁ ବିସେ କେ ଭି ଉଲ୍‌ଟିଆ ଧରସି, ସେ ବୁଧି ତାମସି ।୩୨।

ଆହୋ ପାର୍ଥ ! ମୁନୁଷ୍ ଯେନ୍ ଧୁରତିର୍ ଧ୍ୟାନ୍‌ଯୋଗଥି ମନ୍, ପରାନ୍ ଆର୍ ଇନ୍ଦ୍ରିଅମାନ୍‌କୁ ସିରିଫ୍ ଭଗବତ୍ ପରାପତ୍ ଆଡ୍‌କେ ସୁତ୍‌ରାସି, ସେ ଧୁରତି ସାତ୍ୱିକୀ ।୩୩।

ହେଲେ ହୋ ଅରଜୁନ୍ ! ଯେନ୍ ଧୁରତିର୍ ବଲେଁ ମୁନୁସ୍ ଫଲ୍ ଆଶା ରଖି କରି ଅତିଶେ ଆସକ୍ତି ଥି ଧର୍ମ, ଅର୍ଥ ଆର୍ କାମ୍ ଧାରନ୍ କରସି ସେ ଧୁରତି ରାଜସୀ ।୩୪।

ଆହୋ ପାର୍ଥ ! ଲବାର୍ ବୁଧିର୍ ଟେନ୍‌ହା ଏଁରରେଗିଆ ମୁନୁଷ୍ ଯେନ୍ ଧୁରତିର୍ ବଲେ ଝୁମ୍‌ରା, ଡରଭଏ, ଚିନ୍ତା, ଦୁଖ୍, ବିସ୍‌ମାଦ୍ ଆର୍ ଉରାଟ୍ ରୁବାବ୍ ବି ନାଇଁ ଛାଡେ (ଛାପ୍‌କିଥିସି) ସେ ଧୁରତି ତାମସୀ ।୩୫।

ଆହୋ ମୁରଧୁନିଆ ଭରତ୍ ! ତିନ୍ ରକମର୍ ସୁଖ୍ ଭି ତମେ ଶୁନ । ସାଧକ୍‌ମାନେ ଭଜନ୍ ଧ୍ୟାନ୍ ଆର୍ ସେବା ବଏସେରାର୍ ବଲେ ଯେନ୍ ସୁଖ୍ ପାଏସନ୍, ସେଥି ସଁସାରର୍ ସବୁ ଦୁଖ୍ ମେଟିଯାଏସି । ଜଦିର୍‌ବି ସେ ସୁଖ୍‌ଟା ପହେଲା ମହରା ବାଗିର୍ ଲାଗ୍‌ସି ହେଲେ ପଛେଁ ଅମ୍‌ରୁତ୍ ବାଗିର୍ ଲାଗୁଥିସି, ଆତ୍‌ମା ବୁଧିର୍ ପର୍‌ସାଦ୍‌ନୁ ଇ ଜାତ୍ ହେବାର୍ ସୁଖ୍‌କେ ସାତ୍ୱିକ୍ ସୁଖ୍ କହେସନ୍ ।୩୬-୩୭।

ଯେନ୍ ସୁଖ୍ ବିଷୟା ଆର୍ ଇନ୍ଦ୍ରିଅ ମେଲ୍ ହେଲେ ମିଲ୍‌ସି, ସେଟା ପହେଲା ଭୋଗ୍ ସମିଆଥି ଅମ୍‌ରୁତ୍ ବାଗିର୍ ଲାଗ୍‌ସି, ହେଲେ ପଛେଁ ମହରା ବାଗିର୍ ଲାଗ୍‌ସି, ସେ ସୁଖ୍‌କେ ରାଜସ୍ କହେସନ୍ ।୩୮।

ଯେନ୍ ସୁଖ୍, ଭୋଗ୍ ସମିଆଥି ଆର୍ ଶେଷେଁ ଭି ଆତ୍‌ମାର୍ ମୋହକାରକ୍ ଆଏ, ଝୁମ୍‌ରା, ନିସ୍‌ତିଆ ଆର୍ ପରମାଦ୍‌ନୁ ଜାତ୍ ସେ ସୁଖ୍‌କେ ତାମସ୍ ବଲି କହେସନ୍ ।୩୯।

ପୁରଥି, ମେଘ, ଦେବ୍ତାମାନ୍କରଠାନେ କି ଆର୍ କେନ୍ଠାନେ ଏନ୍ତା କେନ୍ସି ପ୍ରାଣୀ କି ଜିନିଷ୍ ନାଇଁନ, ଯେ କି ପର୍କୁତି ଜାତ୍ ତିନ୍ହି ଗୁନ୍ନୁ ଛଡେଇ ହଇଛେ ।୪୦ ।

ଆହୋ ପରନ୍ତପ୍ ! କରମ୍ ସଭାବ୍ନୁ ଜାତ୍ ଗୁନର୍ ମୁଲେ ବାମ୍ହନ୍, କ୍ଷତ୍ରୀୟ, ବୈଶ୍ୟ, ଆର୍ ଶୁଦୁର୍ ମାନେକୁ ବାଆଁଟି ହଇଛନ୍ ।୪୧।

ମନର୍ ନିଗ୍ରହ, ଇନ୍ଦ୍ରିଅର୍ ଦମନ୍, ତପ୍, ଶୌଚ, କ୍ଷମା, ମନ୍ ଇନ୍ଦ୍ରିଅ ଦିହିକେ ସରଲ୍ ରଖିବାରଟା, ବେଦ୍ ଶାସ୍ତ୍ର ଇଶ୍ୱର୍ ଆର୍ ପରଲୋକ୍ଥି ସଧ ରଖବାରଟା, ବେଦ୍ ଶାସ୍ତର୍ ପଢ଼୍ବାର - ପଢ଼ାବାରଟା ଆଉର୍ ଆସ୍ତିକ୍ ହେବାରଟା ହଉଛେ ବାମ୍ହନ୍ ମାନ୍କର୍ ସଭାବର୍ କରମ୍ ।୪୨ ।

ଶୌର୍ଯ୍ୟ, ତେଜ୍, ଧୈର୍ଯ୍ୟ, ଦକ୍ଷତା, ଯୁଧ୍ୟନୁ ନାଇଁ ପଲାବାରଟା, ଦାନ୍ ଦେବାରଟା, ମାଲିକ୍ ଭାବ୍ - ଇ ସବୁ ହଉଛେ କ୍ଷତ୍ରୀୟମାନ୍କର ସଭାବର୍ କରମ୍ ।୪୩।

ଚାଷ୍ବାସ୍, ଗାଏବଲଦ୍ ପୁଷୁବାରଟା ଆଉର୍ ବିନ୍ ଠକାଭଣାର୍ ବନିଜ୍ ବେପାର୍ ହଉଛେ ବୈଶ୍ୟ ମାନ୍କର୍ ସଭାବର୍ କବାର । ସବୁ ବରନ (ବାମ୍ହନ, ଖେତ୍ରି, ବୈଶ୍ୟ)ର୍ ସେବା କରବାରଟା ହଉଛେ ଶୁଦୁରମାନ୍କର୍ ସଭାବର୍ କରମ୍ ଆଏ ।୪୪ ।

ନିଜର ନିଜର୍ ସଭାବର୍ କବାର୍ କଲେ ମୁନୁଷ ପରମ୍ ସିଧି ପାଏସି, ସେଟା କେନ୍ତାକରି ପାଏସି ତମେ ଶୁନ୍ତେଲ୍ ଯ ।୪୫ ।

ଯେନ୍ ପରମେଶରନୁ ସବୁ ପ୍ରାଣୀ ଜନମ୍ ହଇଛନ୍ ଆର୍ ଯାରନୁ ଇ ସବୁ ଜଗତ୍ ଚାପିଛେ, ସେ ପରମେଶର୍ କେ ନିଜର୍ ସଭାବର୍ କବାର୍ କମେ ପୁଜାଧଜା କଲେ ମୁନୁଷ୍ ପରମ୍ ସିଧି ପାଏସି ।୪୬।

ଭଲ୍ ଆଚରନର୍ ପରହର୍ ଧରମ୍‌ନୁ ନିଜର୍ ଧରମ୍‌ଟା ଯେତେ ବିନ୍ ଗୁନର୍ ହେଲେ ଭିଲ୍ ସେଟା ବଡ଼ ଆଏ, କାଁଜେ ବଏଲେ ନିଜର୍ ସଭାବେ ଧରମ୍ କରମ୍ କଲେ ମୁନୁଷ୍‌କୁ ପାପ୍ ନାଇଁ ଛିଏ ।୪୭।

ଆହୋ କୁନ୍ତିର୍ ପୁଓ ! ଦୋଷ୍ ମେସିଥିଲେ ଭିଲ୍ ନିଜର୍ ସଭାବ୍ କରମ୍ ତ୍ୟାଗ୍ ନାଇଁ କରବାର୍ କଥା,କାରନ୍ ଜୁଏ ଜେନ୍ତା କୁହୁଲାଥି ଢ଼ାଁପି ହଇଥିସି,ସବୁ କରମ୍ ସେନ୍ତା କେନ୍‌ସି ଦୋଷ୍‌ଥି ମେସିଥିସି ।୪୮।

ସବୁଠାନେ ଆସକ୍ତି ଛାଡିକରି ବୁଧିର୍ ବଲେ ବିନ୍ କାମନାଥି ଦିହିମନ୍‌କେ ଆଏତେ ରଖିଥିବାର୍ ମୁନୁଷ୍ ସନ୍ୟାସ୍ ଯୋଗ୍ ଥି ସିଧି ମୁକ୍‌ତି ପାଏସନ୍।୪୯।

ସିଧି ମୁକ୍‌ତି ପାଇଥିବାର୍ ମୁନୁଷ୍ ଯେନ୍ ରକ୍‌ମେ ବରମ୍‌ହ ପରମାତ୍‌ମାକେ ପାଏସି, ସେଟା ହୋ କୁନ୍ତିର୍ ପୁଓ! କମ୍ ହିସାବେ ମୋରନୁ ବୁଝିନିଅ। ସେଟା (ପରମାତ୍‌ମା ପରାପତ) ନିଦାନ୍ ଗ୍ୟାନ୍ ଆଏ ।୫୦।

ନିରମଲ୍ ବୁଧିଥି ସରଲ୍ ସାତ୍ୱିକ୍ ହଇକରି ଶବଦ୍ ବାଗିର୍ ଇନ୍ଦ୍ରିଅ ବିସୋ ତିଆଗ୍ କରି କରି ଛିନା ଆର୍ ଚାତର୍ ପବିତ୍ରଠାନେ ଦରକାର୍ ହିସାବେ ଖାଏଲେ, ଇନ୍ଦ୍ରିଅ (ଦିହି, ମନ୍, ବାଣୀ) କେ ଆଏତେ ରଖିଲେ, ବଏରାଗର୍ ବଲେ ରାଗଦ୍ୱେଷ୍‌କେ ଅନାମେତ୍ ମେଟେଇଦେଲେ,

ଅହଁକାର,ବଲ,ବଫୁ, ଉରାଟ୍, କାମ୍, ରିସ୍‌ମି ତ୍ୟାଗ୍‌କରି କରି ମମତା ଶୁଇନ୍ ହଇକରି ସିଆଁନ୍‌ତି ମନେ ଲଗେଇ୍ ଧ୍ୟାନ୍‌ଯୋଗ୍‌ଥି ରହେଲେ ମୁନୁଷ୍ ବରମହ ପରାପତର୍ ଲାଏକ୍ ହେସି ।୫୧-୫୨-୫୩।

ଯେନ୍ ସାଧକ୍ ବ୍ରହ୍ମଭାବ୍‌ଥି ଗୁଟେ ହଇଯାଏସି, ସେ କାହାର୍ ଲାଗି ଶୋକ୍ ନାଇଁ କରେ କି କେନ୍‌ସି ଆଶା ନାଇଁ ରଖେ। ସେ ଝନ୍‌କ ସବୁ ଜୀବ୍‌କେ ସମାନ୍ ଦେଖ୍‌ସି, ମୋର୍ ପରାଭକ୍‌ତି କେ ପାଇ ଯାଏସି ।୫୪।

ସେନ୍ତା ପରାଭକ୍‌ତିଥି ସାଧକ୍ ମତେ (ପରମାତ୍‌ମାକେ) ମୁଇଁ କିଏ, କେନ୍ତା କାଣା, ସେଟା ଭଲ୍‌କରି ଜାନିପାରସନ୍। ସେ ଭକ୍‌ତିଥି ମତେ ଜାନିକରି ମୋର୍ ଭିତ୍‌ରେ ଗୁଟେ ହଇଯାଏସନ୍।୫୫।

ମୋର୍ ଆଶ୍ରାନ କର୍ମଯୋଗୀ ତ ହର୍‌ମେସା ସକଲ୍ କରମ୍ କରୁଥିଲେ ଭିଲ୍ ମୋର୍ ଦୟା ପରସାଦ୍ ପାଇକରି ଶେଷେଁ ତରିଯାଏସନ୍, ପରମ୍ ଅମର୍ ପଦ୍ ପାଏସନ୍ ।୫୬।

ମନେ ମନେ ସବୁ କବାର୍ ମୋର୍ ନ ସଁପିଦିଅ, ସମ୍‌ବୁଧିଆ ଯୁଗୀ ପାଲ୍‌ଟିକରି ମତେ ଗ୍ୟାନ୍ କର ଆଉର୍ ସରଲଗ୍ ମୋର୍‌ଠାନେ ମନ୍ ଲଗ ।୫୭।

ଏନ୍ତାଭାବେ ମୋର୍‌ଠାନେ ମନ୍ ଲଗାଲେ ତମେ ମୋର୍ କୃପାନୁ ସବୁ ଅଲହନ୍ ଦୁଖୁଁ ତରିଯିବ। ଜଧ୍‌ରି ଅହଁକାର୍ ମନେ ମୋର୍ କଥା ନାଇଁ ଶୁନ୍‌ବ, ତମର୍ ପରମାଥିଆ ଭ୍ରଷ୍ଟ ହଇକରି ଦୁର୍‌ଗତି ପାଏବ।୫୮।

ତମେ ଯେନ୍ ଅହଁକାରର୍ ଉଧେ 'ମୁଇଁ ଯୁଧ୍ୟ ନାଇଁ କରେ' ବଲି କେତେ ଭାଲି ହୁର୍‌ଗୁନି ହଉଛ, ଇ ଅଭିମାନ୍ ଛୁଛା ଆଏ, କାରନ୍ ତମର୍ ପର୍‌କୁତି ତମ୍‌କୁ ଘିଚିଟାନିକରି ଯୁଧ୍ୟଥି ଲଗାବା ।୫୯ ।

ଆହୋ ବାବୁ କୁନ୍ତିର୍ ପୁଓ ! ତମେ ମୋହ ମାୟାଥି ପଡିକରି ଯେନ୍ କବାରେ ମନ୍ ନାଇଁ ଦେବାର୍, ସେଟା ଭି ନିଜର୍ ସଭାବ୍ କରମ୍‌ଥି ବାଧିଁ ହଇକରି କର୍‌ବ ।୬୦ ।

ଆହୋ ଅରଜୁନ୍ ! ଇଶ୍ୱର୍ ସବୁ ଜୀବର୍ ହୁର୍‌ଦେଁ ରହିକରି ଦିହର୍ ଜନ୍ତର୍‌ଧାରୀମାନ୍‌କୁ ନିଜର୍ ମାୟାମହନିଥି କରମ୍ ଅନ୍‌ସାରେ ପୁତ୍‌ଲି ବାଗିର୍ ନଚାସନ୍ / କିଁଦ୍‌ରାସନ୍ ।୬୧ ।

ଆହୋ ଭାରତ୍ ! ତମେ ସବୁ କିସ୍‌ମେ ସେ ମହାପୁରୁର୍ ପାହା ପଦ୍‌ମେ ଶରନ୍ ପଶ । ସେ ପରମାତ୍‌ମାର୍ କୁର୍‌ପାନୁ ତମେ ପରମ୍ ସିଆଁନ୍‌ତି ଆର୍ ପରମ୍‌ଧାମ୍ ପାଏବ ।୬୨ ।

ଏନ୍ତା ଇ ଗୁପତ୍‌ନୁ ଭି ଅଏଧିକା ଗୁପତ୍ ଗ୍ୟାନ୍ ମୁଇଁ ତମର୍ ଆଘେ କହେଲି । ଏହେଦେ ତମେ ଇ ଗ୍ୟାନକେ ଅଏନ୍ କରି ବିଚାର୍ କର ଆର୍ ଯେନ୍ତା ମନ୍ ଲାଗୁଛେ ସେନ୍ତା କର ।୬୩ ।

ମୋର୍ ସବ୍‌ସେ ବଡ୍ ଗୁପତ୍ କଥା ଆର୍ ଘାଏ ଶୁନ । ତମେ ମୋର୍ ଜହ ସେନ୍‌ହୋ ଆହାଲାଦର୍ ବଲି ତମ୍‌କୁ ଇ ପରମ୍ ହିତ୍‌କର୍ କଥା ଫେର୍ ପାରେ କହେମି ।୬୪ ।

ଆହୋ ଅର୍‌ଜୁନ ! ତମେ ମୋର୍‌ଠାନେ ମନ୍ ଲଗ, ମୋର୍ ଭଗତ୍ ହଇ ଯ, ମୋର୍ ପୁଝାରୀ ହଇ ଯ, ମତେ ଜୁହାର୍ କର । ଏନ୍ତା କଲେ ତମେ ମତେ ବେଶକ୍ ପାଏବ, ଇଟା ମୁଇଁ ତମ୍‌କୁ ସତ୍ କରି କହୁଛେଁ, କାରନ୍ ତମେ ମୋର୍ ଅଏସୋ ଢ଼କ୍‌ଢ଼କା ଅ ।୬୫ ।

ସବୁ ଧର୍ମ (କର୍‌ବାର୍ ଲାଏକ୍ କବାର୍ କମ୍) ମୋର୍ ନ ଉଲ୍‌ଦି / ଜୁଗ୍‌ରେଇ ଦେଇକରି ତମେ ସିରିଫ୍ ମୋର୍ ଶରନ୍ ପଶ । ମୁଇଁ ତମ୍‌କୁ ସବୁ ପାପୁଁ ମୁକ୍‌ତି ଦେମି, ତମେ ଶୁଚନା / ଚିନ୍ତା ନାଇଁ କର ।୬୬ ।

ତମେ ଇ ଗୀତାର୍ ଗିଆନ୍‌କେ କେଭେଁ ଭି ଅତପସ୍ୱୀ, ଅଭଗତ୍ କି ଶୁନ୍‌ବାର୍ ମନ୍ ନାଇଁ ଥିବାର୍ ମୁନୁଷ୍‌କୁ ନାଇଁ କହେବାର୍ କଥା । ଆଉର୍ ଯେ ମୋର୍ ଭୁଲ୍‌ଚୁକ୍ ନୁର୍‌ସି, ନିନ୍ଦା କର୍‌ସି-ତାହାକେ ତ ବିଲ୍‌କୁଲ୍ ନାଇଁ କହେବାର୍ କଥା ।୬୭ ।

ଯେନ୍ ଲୁକେ ମୋର୍‌ଠାନେ ପ୍ରେମ୍‌ଭକ୍‌ତି ରଖିକରି ଇ ଅତିଶେ ଗୁପ୍ତର ଗୀତା ଶାସ୍ତର୍ ମୋର୍ ଭଗତ୍‌ମାନ୍‌କର୍ ଆଘେ କହେବେ, ସେ ମତେ ହିଁ ପାଏବେ, ଇଥି କେନ୍‌ସି ଶଁକା ନାଇଁନ ।୬୮ ।

(ମୋର୍ ଉସତ୍ ହେବାର୍ କବାର୍ କଲା) ମୁନୁଷ୍ ମଏଧେଁ ତାର୍‌ନୁ ବଡ଼ ଆର୍ କିହେ ନାଇଁନ । ଇ ସାରା ପୁର୍‌ଥିନ ତାକର୍‌ନୁ ବଲି ମୋର୍ ଜହ ପ୍ରିୟ ଦୁସ୍‌ରା କିହେ ପଛ୍‌କେ ଭବିଷ୍‌କେ ଘଲେ ନାଇଁ ହୁଅନ୍ ।୬୯ ।

ମୁଇଁ ତମ୍‌କୁ ଇ ମତେଁ କହୁଛେଁ ଯେ, ଯେନ୍ ଲୁକେ ଆମର୍ ଦୁହିକର୍ ଇ ଧରମ ମଏ କଥା ବାର୍ତାର୍ ଗୀତା ଶାସ୍ତ୍ର ପଢ଼୍‌ବେ, ମୁଇଁ ତାକର୍ ଗ୍ୟାନ୍ ଜଗ୍‌ୟଁର୍ ପୂଜା ପାଏମି ।୭୦ ।

ଯେନ୍ ମୁନୁଷ୍ ସଧା/ଶରଧା ରଖିକରି, ଦୋଷ୍ ନାଇଁ ଦେଖିକରି ଗୀତା ଶାସ୍ତର୍ ଶୁନ୍‌ବେ ଖାଲି, ସେ ଭି ପାପୁଁ ମୁକ୍‌ତି ପାଇକରି ପୁଇନ୍ କରତା ଲେଖେନ୍ ଭଲ୍ ଗତି ପାଏବେ ।୭୧ ।

ଆହୋ ପାର୍ଥ ! କାଣା ଇ ଗୀତା ଶାସ୍ତର୍‌କେ ତମେ ଏକ୍‌ମନେ ଏକ୍ ଚିତେ ଶୁନ୍‌ଲ ତ ? ଆହୋ ଧନ୍‌ଜଏ ! ତମର୍ ଅଗ୍ୟାନ୍ ମୋହଟା ମେଟ୍‌ଲା କାଏଁ ? ।୭୨ ।

**ଅର୍‌ଜୁନ୍ କହେଲେ-** ହେ ଅଚ୍ୟୁତ୍ ! ଆପଣକର୍ ଦୟା କୁର୍‌ପାନୁ ମୋର୍ ମୋହ ପଏରଛା ମେଟିଗଲା, ମୁଇଁ ଇଛେନ୍ ସୋର୍ ସୁତର୍ ପାଇଗଲିଁ, ମୋର୍ ଶଁକା ଭରମ୍ ପୁରାପୁରି ଉଭି ଗଲା । ତ ଏତ୍‌କେ ମୁଇଁ ଆପଣକର୍ କଥା ମାନ୍‌ମି ।୭୩ ।

**ସନ୍‌ଜଜ କହେଲେ-** ଏନ୍ତା ଭାବେ ମୁଇଁ ଶ୍ରୀ ବାସୁଦେବ୍ ଆର୍ ଅର୍‌ଜୁନ୍ ମହାତ୍ମାର୍ ଇ ଆକାଭୁତ୍ ରୁଆଁ ଟେଁକ୍‌ରା ଗୁପ୍‌ତିଆ ଭେଦର୍ କଥାବାର୍ତା ଶୁନ୍‌ଲି ।୭୪ ।

ଶ୍ରୀ ବ୍ୟାସ୍‌ଦେବର୍ ଦୟାନେ ଦିବ୍ୟଦୃଷ୍ଟି ପାଇକରି ମୁଇଁ ଇ ଅତିଶେ ଗୁପତ୍ ଯୋଗ୍ ଅର୍‌ଜୁନ୍‌କୁ କହୁଥିବାର୍‌ଟା ଖୁଦ୍ ଯୋଗେଶ୍ୱର ଭଗବାନ୍ ଶ୍ରୀକୁଷ୍ଣଁର୍ ଟୁଁଡୁଁ ପରତଏଖ୍ ଶୁନିଛେଁ ।୭୫ ।

ହେ ରାଜନ୍ ! ଭଗବାନ୍ ଶ୍ରୀକୁଷ୍ଣଁ ଆଉର୍ ଅର୍‌ଜୁନ୍ ଗୁସିଆଁ କର୍ ଇ ଗୁପତିଆ, କଲ୍ୟାଣ କର୍ ଆରୁ ଆଚମିତ୍ କଥାବାର୍ତା ଘାଏକେ ଛନ୍‌କେ ସୋର୍ କରି କରି ମୁଇଁ କେଥନି କେତେ ଉସତ୍ ହଉଛେଁ ।୭୬ ।

